# ସଦ୍ ଭାବନା



ଶ୍ରୀ ରାମଚନ୍ଦ୍ର ମହାନ୍ତି

# ସତ୍-ଭାବନା

( ପଦ୍ୟାବଳୀ )



ରାମଚନ୍ଦ୍ର ମହାନ୍ତି

# ସଦ୍‌ଭାବନା

ରଚୟିତା :

**ଶ୍ରୀ ରାମଚନ୍ଦ୍ର ମହାନ୍ତି**

ପ୍ରକାଶିକା :

**ଶ୍ରୀମତୀ ଜାନକୀ ପ୍ରଭା ମହାନ୍ତି**



ମୁଦ୍ରଣ :

ଶ୍ରୀମତୀ କାନନ ବାଳା ଦାସ

ଚନ୍ଦ୍ରଶେଖର ପ୍ରେସ୍, ଢେଙ୍କାନାଳ

ପ୍ରଥମ ମୁଦ୍ରଣ– ଅକ୍ଟୋବର, ୧୯[illegible]

ପ୍ରାପ୍ତିସ୍ଥାନ :

ବିଦ୍ୟାପୁରୀ, ବାଲୁବଜାର, କଟକ-୨

ମୂଲ୍ୟ—**ଅଠର ଟଙ୍କା**



| କ୍ର. ନଂ. | ବିଷୟ | ପୃଷ୍ଠାଙ୍କ |
|---|---|---|
| ୧. | ସଦ୍‌ଭାବନା | ୧ |
| ୨. | ପ୍ରାରବ୍ଧ | ୩ |
| ୩. | ନିଷ୍କାମ ଭକ୍ତି | ୫ |
| ୪. | ବଢ଼ପଣ | ୭ |
| ୫. | ବିବେକ | ୧୧ |
| ୬. | ସମର୍ପଣ | ୧୨ |
| ୭. | ପାପପୁଣ୍ୟ | ୧୪ |
| ୮. | ଭ୍ରମ | ୧୬ |
| ୯. | ଶୋଭନୀୟତା | ୧୮ |
| ୧୦. | ଅହଂକାର | ୨୦ |
| ୧୧. | ବିସ୍ମୃତି | ୨୪ |
| ୧୨. | ମାୟା | ୨୭ |
| ୧୩. | ଆସକ୍ତି | ୩୦ |
| ୧୪. | ଯୌତୁକ | ୩୧ |
| ୧୫. | କାମନା | ୩୬ |
| ୧୬. | ମୋକ୍ଷ | ୩୮ |
| ୧୭. | ନିର୍ବନ୍ଧ | ୩୯ |
| ୧୮. | ଦୀର୍ଘାୟୁ | ୪୧ |
| ୧୯. | ନିରପେକ୍ଷ | ୪୩ |
| ୨୦. | ଅଭିମାନ | ୪୬ |
| ୨୧. | ଧର୍ମ | ୪୯ |

# ଉତ୍ସର୍ଗ

ଜଲି,

ଗତ ଜାନୁୟାରୀ ମାସରେ ତୁ କଟକ ଆସିଥିଲାବେଳେ ମୁଁ ବହୁ ପୂର୍ବରୁ ଲେଖିଥିବା 'ଆତ୍ମଚିନ୍ତନ' କବିତାର ପାଣ୍ଡୁଲିପି କୋଉ ଆଲିମାଲିକାରୁ ବାହାର-କରି ତାକୁ ଛପାଇବା ପାଇଁ ଇଚ୍ଛା ପ୍ରକାଶ କଲୁ । ମୁଁ ସମ୍ମତ ହେଲି ଏବଂ କହିଲି— ଆଉ କେତୋଟି ଛୋଟ କବିତା ଲେଖି ପାରିଲେ ଦେବି- ସେଥିରେ ମିଶାଇଲେ ଭଲ ହେବ । କାଳ ବିଳମ୍ବ ନ କରି ମୁଁ କବିତା ଲେଖିବାକୁ ଚେଷ୍ଟା କଲି । ଦୈବୀକ୍ରମେ ଲେଖୁ ଲେଖୁ ଅନେକ ଗୁଡ଼ିଏ କବିତା ଅଳ୍ପ ସମୟ ଭିତରେ ଲେଖି ହୋଇଗଲା । ତେଣୁ ଆଉ 'ଆତ୍ମଚିନ୍ତନ' କବିତା ସାଙ୍ଗରେ ସେଗୁଡ଼ିକ ନ ମିଶାଇ ସ୍ୱତନ୍ତ୍ର ଭାବରେ ବହିଟିଏ ଛପାଇବା ପାଇଁ ମୁଁ ତତେ ପ୍ରସ୍ତାବ ଦେଲି ଏବଂ ସୂଚେଇ ଦେଲି ଯେ ଆତ୍ମଚିନ୍ତନ କବିତାର ଭାବଧାରା ଏ କବିତା ଗୁଡ଼ିକ ମଧ୍ୟରୁ ଅଧି-କାଂଶରେ ପରୋକ୍ଷ ଭାବରେ ପ୍ରତିଫଳିତ ହୋଇଛି ଏବଂ ଯାହା ନ ହୋଇଛି ସେ ଅଂଶ ଗୁଡ଼ିକ ମଧ୍ୟ ଏଥିରେ ସଂଯୋଗ କରିବା ବୋଲି କହିଲି । ତୁ ରାଜି ହେଲୁ ଏବଂ ଛପା କାମ ଆରମ୍ଭ ହେଲା । ମୁଁ କବିତା ଲେଖିବି ଏବଂ ବହିଟିଏ ଛପାଇବି— ଏ କଳ୍ପନା କେବେ ମୋ ମନକୁ ଛୁଇଁ ନଥିଲା । ଏଣୁ ଏ ବହିଟି ପୁରାପୁରି ତୋର ଇଚ୍ଛାରୁ ସମ୍ଭୂତ ଏବଂ ବସ୍ତୁତଃ ତୁ ଛପାଇବାକୁ ଇଚ୍ଛା କରିଥିବା 'ଆତ୍ମଚିନ୍ତନ'ର ପରିବର୍ତ୍ତିତ ରୂପ ସାଙ୍ଗରେ ଆଉ କେତୋଟି କବିତାର ମିଶ୍ରଣ । ତୋର ଆଉ ଶ୍ରୀମାନ୍ ସରୋଜର ପ୍ରେରଣା ଓ ଆନ୍ତରିକ ଉଦ୍ୟମ ଯୋଗୁ ଏହା ସ୍ୱଳ୍ପ ସମୟ ଭିତରେ ଆତ୍ମପ୍ରକାଶ କରିବାରେ କ୍ଷମ ହେଲା । ତୁ ଯାହା ଚାହିଁଥିଲୁ, ଠିକ୍ ସେଇଆ ହୋଇଛି । ତେଣୁ ତୁ ଖୁସି ହେବୁ ବୋଲି ବହିଟି ତୋରି ହାତରେ ଦେଲି । ନିଜ ଇଚ୍ଛା ଆଉ ଚେଷ୍ଟାର ସାର୍ଥକ ରୂପାୟନରେ କେହି କଅଣ ଖୁସି ନ ହୋଇ ରହିପାରେ ?

ବାପା

# ମୁଖବନ୍ଧ

'ଗୀତା ସୁଧାସାର' ବହିଟି ସଂକଳନ କରିବା ଅବସରରେ ଯେଉଁ ସାମାନ୍ୟ ଧର୍ମ ଧାରଣା ଲଭ କଲି, ତାହା କ୍ରମେ ଜୀବନର ବିଭିନ୍ନ ବିଭବକୁ ପ୍ରସାରିତ ହୋଇ ମନରେ ଆଲୋଡନ ସୃଷ୍ଟି କଲା । ଭଗବଦ୍ ଭବନା ମନକୁ ଅଧିକରୁ ଅଧିକ ସ୍ପର୍ଶ କଲା । ନିଜ ଜୀବନର ଘଟଣାବଳୀ, ପାରିପାର୍ଶ୍ୱିକ ଅବସ୍ଥା ସେହି ଲବ୍ଧ ଧର୍ମ ଧାରଣାକୁ ଆଶ୍ରୟ କରି ବିଭିନ୍ନ ଭବ ମନରେ ସଞ୍ଚାରଣ କଲା । ସେହି ଭବ ଗୁଡ଼ିକ କେତୋଟି ପଦ୍ୟରେ ରୂପାୟିତ ହୋଇଛି ଯାହା ଏ ପୁସ୍ତିକାରେ ସନ୍ନିବେଶିତ । ବହିଟି ପାଠକମାନଙ୍କର ଉପକାରରେ ଆସିଲେ ଆନନ୍ଦଲାଭକରିବି ।

ରାମଚନ୍ଦ୍ର ମହାନ୍ତି

Dr. D. Sastri, M.A. Ph. D (Utkala)
M A. Sans. M.A. Journalism (Cal.),
Kavya-Vyakaran Purana-Tirtha (Cal.),
Sankhya-Vedanta-Sahityashastri (Dacca.)
Bhaktishastri (Navadwip).

Pareswarsahi
Cuttack-3
Phone : 20631
Date..............

# ଅଭିମତ

ଶ୍ରୀ ରାମଚନ୍ଦ୍ର ମହାନ୍ତିଙ୍କ ରଚିତ 'ସଦ୍‌ଭାବନା' ଗ୍ରନ୍ଥଟିର ପାଣ୍ଡୁଲିପି ଆମୂଳଚୂଳ ପଢି ଅଶେଷ ତୃପ୍ତିଲାଭ କଲି । ଏଥି ପୂର୍ବରୁ ତାଙ୍କ ରଚିତ 'ଗୀତା ସୁଧାସାର' ଗ୍ରନ୍ଥଟି ପଢିବାର ସୌଭାଗ୍ୟ ହୋଇଥିଲା ।

କଥାରେ ଅଛି "ତାବତ୍ ଶୋଭତେ ମୂର୍ଖ ଯାବତ୍ କିଞ୍ଚିତ୍ ନ ଭାଷତେ ।" ଅର୍ଥାତ୍ କିଛି କହିଲେହି ବ୍ୟକ୍ତିର ପାଣ୍ଡିତ୍ୟ, ଜ୍ଞାନ ବା ଅଜ୍ଞତା କେତେ, ତାହା ଜଣାପଡେ । ସେହିପରି ସମାଜରେ ତଥାକଥିତ ସାଧୁ, ବାବାଜୀ ବେଶାଶ୍ରୟୀ ବ୍ୟତୀତ ସାଧାରଣ ଗୃହସ୍ଥ ଭିତରେ ବହୁ ପରମାର୍ଥ-ସାଧକ ଆତ୍ମଗୋପନ କରିଥାଆନ୍ତି । କିନ୍ତୁ ସେମାନେ ଧରା ପଡ଼ି ଯାଆନ୍ତି ସେତେବେଳେ ଯେତେବେଳେ ସେମାନେ ନିଜ ନିଭୃତ କକ୍ଷରେ ବସି କିଛି ଲେଖି ପକାନ୍ତି ଏବଂ ସେ ଲେଖା ପ୍ରକାଶ ପାଇଯାଏ । ଶ୍ରୀ ମହାନ୍ତିଏ ସେହିପରି ଏକ ବ୍ୟକ୍ତି ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

ଶ୍ରୀ ମହାନ୍ତିଙ୍କର ଲେଖା ପଢି ଧାରଣା ହେଲା, ଶାସ୍ତ୍ର ନ ପଢି ମଧ୍ୟ ଶାସ୍ତ୍ରଜ୍ଞାନ ଶୁଦ୍ଧ ଚିତ୍ତରେ ସ୍ଫୂର୍ତ୍ତିପ୍ରାପ୍ତ ହୋଇଥାଏ । ଗୀତାର ସାରତତ୍ତ୍ୱ, ଭକ୍ତିର ରସବୋଧ ଓ ଆଧ୍ୟାତ୍ମିକ ତତ୍ତ୍ୱର ବିଜ୍ଞାନ ଏବଂ ସଂସାର ପ୍ରତି ଆସକ୍ତିଶୂନ୍ୟତା ଏ ସମସ୍ତ ଯେପରି ତାଙ୍କ ହୃଦୟରେ ସ୍ୱତଃ ସ୍ଫୂର୍ତ୍ତିପ୍ରାପ୍ତ ହୋଇଛି ।

ଲେଖାର ସରଳ, ସହଜ, ସୁଖବୋଧ୍ୟ ଭାଷା ଯେ କୌଣସି ବ୍ୟକ୍ତିଙ୍କୁ ଗ୍ରନ୍ଥ ପଢିବା ପାଇଁ ଆକୃଷ୍ଟ କରିବ । ଲେଖକ ଶତଜୀବୀ ହୋଇ ନିଜ ସ୍ୱାନୁଭୂତ ସାଧନାର ଭାଷାରୂପ ଅଧିକ କିଛି ସମାଜକୁ ଦାନ କରନ୍ତୁ । ଏହାହିଁ ପ୍ରାର୍ଥନା ।

ଦୋଳଗୋବିନ୍ଦ ଶାସ୍ତ୍ରୀ
ତା ୧୨ । ୬ । ୮୮

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୩ | ତୁଛ | ତୁଚ୍ଛ |
| ୯ | ୬ | ବରଣିବାରେ | ବରଣିବାରେ |
| ୧୫ | ୧୭ | ଶୋଭନୀୟ ତାର | ଶୋଭନୀୟତାର |
| ୨୨ | ୧୬ | ପ୍ରତ୍ୟେୟ | ପ୍ରତ୍ୟୟ |
| ୨୫ | ୨୫ | ବେଶ | ବେଗ |
| ୨୬ | ୧୯ | ନିଶ୍ଚିନ୍ତ | ନିଶ୍ଚିତ |
| ୨୮ | ୨ | ସହରେ | ସହଚର |
| ୩୦ | ୧ | ଆଶକ୍ତି | ଆସକ୍ତି |
| ୩୦ | ୧୧ | ରହୁ | ରହ |
| ୩୦ | ୧୪ | ନଲଗେ | ନଲଗ |
| ୩୨ | ୧୨ | ଆସ୍ତାନ | ଆଘ୍ରାନ |
| ୩୩ | ୧୯ | ଅଭବି | ଅଭବୀ |
| ୪୨ | ୨୮ | ଖୁସୀ | ଖୁସି |
| ୪୩ | ୧୬ | କୁତାର୍ଥ | କୃତାର୍ଥ |
| ୪୫ | ୨୨ | ଆଡ଼ା | ଆଡତା |
| ୪୪ | ୧୭ | ଦୁରେ ବହୁଦୁରେ | ଦୂରେ ବହୁଦୂରେ |
| ୪୯ | ୧୪ | ଉଦିଷ୍ଟ | ଉଦ୍ଦିଷ୍ଟ |
| ୫୯ | ୧୯ | ଆହ ରଣେ | ଆହରଣେ |
| ୬୦ | ୮ | ଯୋଜନ | ଯୋଜନା |
| ୬୧ | ୭ | ସମଧାନ | ସମାଧାନ |
| ୭୧ | ୧୧ | ସେନ୍ଦେହ | ସନ୍ଦେହ |
| ୮୦ | ୫ | ବାରଷା | ବରଷା |
| ୯୧ | ୧୫ | ଦୋକ୍ଷ | ଦୋଷ |
| ୯୨ | ୧୪ | ଆଗୋଚର | ଅଗୋଚର |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯୩ | ୧ | ଟାଉଟାରି | ଟାଉଟରି |
| ୯୬ | ୧୧ | ମୁଖ୍ୟ | ମୁଖ୍ୟ |
| ୯୮ | ୨୪ | ଯୁଥିଷ୍ଠି | ଯୁଧିଷ୍ଠି |
| ୧୦୪ | ୨ | ହୁଏ ଏହାକି | ଏହା କି ହୁଏ |
| ୧୦୦ | ୪ | ଚକତି | ଚକିତ |
| ୧୧୦ | ୬ | ବିଗଗ | ବିଘଗ |
| ୧୧୨ | ୨୦ | ଇଛି | ଇଚ୍ଛି |
| ୧୧୬ | ୨୪ | ଲୋଡାନାହିଁ | ଲୋଡ଼ନାହିଁ |
| ୧୨୨ | ୨ | ଦୁଃଖ | ଦୁଃଖ |
| ୧୨୮ | ୬ | ପଦାଥ | ପଦାର୍ଥ |
| ୧୨୮ | ୧୩ | କୁଟୁମ୍ବ | କୁଟୁମ୍ବ |
| ୧୩୫ | ୧ | ଜାଚକ | ଯାଚକ |
| ୧୪୮ | ୯ | ତପ୍ତି | ତୃପ୍ତି |
| ୧୬୬ | ୧୬ | ସହଜେ | ସହନେ |
| ୧୬୮ | ୮ | ସ୍ୱଭବେ | ସ୍ୱଭବେ |
| ୧୬୮ | ୨୬ | ଗରବ | ଗୌରବ |
| ୧୪୯ | ୩ | ପଇଁ | ପାଇଁ |
| ୧୪୯ | ୪ | କମନା | କାମନା |
| ୧୭୪ | ୨ | ଥବ | ଥିବ |
| ୧୭୯ | ୨୩ | ନ୍ୟଯା | ନ୍ୟାୟ |
| ୧୭୯ | ୨୦ | କାଥକୁ | କଥାକୁ |

## —ସଦ୍‌ଭାବନା—

( ନିଜେ ଭଲ ହେବା ସଙ୍ଗେ ଅନ୍ୟମାନେ ଯେପରି ଭଲ ହେବେ-ଏହି ଭାବ ରଖି କାମ କଲେ ସମାଜ ଦୁଃଖମୁକ୍ତ ହେବ । )

ନ କରିବ ମୁହିଁ ଅନ୍ୟାୟ
ଯଦିଛି ଯାଉ ଜୀବନ,
ତୁଚ୍ଛ ଲଭ ପାଇଁ ମିଥ୍ୟାରେ
କେବେ ନ ଦେବି ମନ । ୧ ।

ଆଘାତ କେ ଦେଲେ ସହିବି
ରୋଷ କରିବି ନାହିଁ,
ବଳେ ମନ ତାର ବୁଝିବ
ଦ୍ୱେଷ ଯିବ ପଳାଇ । ୨ ।

ଗୁରୁଜନେ ଭକ୍ତି କରିବି
ଲଘୁଜନରେ ସ୍ନେହ,
ସ୍ନେହ ଭକ୍ତି ଦାନେ ହୁଏକି
ମନ ସଂପଦ କ୍ଷୟ । ୩ ।

ସତ୍‌କର୍ମେ ପ୍ରବୃତ୍ତ ହୋଇବି
ତେଜି ମନରୁ ଭୟ,
ଅଧର୍ମୀ ଅଜ୍ଞାନୀ ଲୋକଟି
ସିନା ଡ଼ରେ ଅଥୟ । ୪ ।

ମଧୁର ବଚନ କହିବ
କପଟତା ବରଜି,
ହସି ହସାଇବ ସଭିଙ୍କି
ସରଳତାରେ ମଜ୍ଜି ! ୫ ।

ସୁଖ ଦେବାପାଇଁ ଯଦବା
ମୋର ନାହିଁ ଶକତି,
ଦୁଃଖର କାରଣ ନହୁଏ
ମୋର ଏହି ମିନତି । ୬ ।

ପିତା, ମାତା, ଭାଇ, ଭଉଣୀ
ସାଇ ପଡ଼ଶା ଜନ,
ବନ୍ଧୁ ବାନ୍ଧବଙ୍କ ହୋଇବ
ସଦା ସ୍ନେହ ଭାଜନ । ୭ ।

ସତ୍ ସଙ୍ଗରୁ ପୁଣି ସଦ୍ ଗ୍ରନ୍ଥ
ପଢ଼ି ଯାହା ଶିଖିବ,
କର୍ମେ ରୂପାୟନ କରିବ
ସଦା ମନେ ଧ୍ୟାଇବ । ୮ ।

ପର ସେବା ପାଇଁ ହୋଇବ
ସଦା ମୁଁ ଅଗ୍ରସର ·
ନିଜ ପର ସର୍ବେ ମଣିବ
ଶକ୍ତି ପରମେଶ୍ୱର । ୯ ।

ସମସ୍ତେ ମୋ ପରି ହୁଅନ୍ତୁ
ଏହି ଚେଷ୍ଟା କରିବ,
ସମାଜରୁ ମଳନତାକୁ
ଧୋଇ ସଫା କରିବ । ୧୦ ।

ଶୁଭ ବିରାଜିବ ସମାଜ
ହେବ ସୁଶୋଭନୀୟ,
ଦୁଃଖମୁକ୍ତ ନବ ଯୁଗର
ହୋଇବ ଅଭ୍ୟୁଦୟ । ୧ ।

--o--

# ପ୍ରାରବ୍ଧ

( ପ୍ରାରବ୍ଧ ଅନୁସାରେ ଲୋକ ଶୁଭାଶୁଭ କର୍ମଫଳ ଇହଜନ୍ମରେ ଗତ ପ୍ରାପ୍ତହୁଏ )

ଦୁନିଆ ବଜାରେ ପଠାଇଛ ପ୍ରଭୁ
ହାତରେ ଦେଇନା କଉଡ଼ି,
ଏତେ ଅବିବେକୀ ଜାଣିତ ନଥିଲି
କାନ୍ଦିଲେ ମାରୁଛ ଭ୍ରୂକୁଞ୍ଚି । ୧ ।

ଆଖିରେ ଦେଖୁଛି କେତେ କେତେ ଲୋକ
ଥକିଆ ଭରତି କଲେଣି
ଲୁହରେ ମୁଣ୍ଡି ମୋ ଖାଲି ପଡ଼ିଅଛି
ବଜାରଟା ବନ୍ଦ ହେଲାଣି । ୨ ।

ବଜାରଟା ଯାକ ବୁଲି ଥକା ହେଲି
ଆଖିରେ ଯିନା ଯା ଦେଖିଲି
ଗୋଟିଏ ହେଲେ ବି ନଜର ନ କଲି
ମନମରା ହୋଇ ରହିଲି । ୩ ।

ବିନା କଉଡ଼ିରେ ବଜାରରେ ଦ୍ରବ୍ୟ
ମିଳେ ନାହିଁ ବୋଲି ଜାଣିଛ
ଜାଣି କିମ୍ପା ପ୍ରଭୁ କଉଡ଼ି ନ ଦେଇ
ପଠାଇ ହିନସ୍ତା କରୁଛ । ୪ ।

ଯାହାଙ୍କୁ କଉଡ଼ି     ଦେଇ ପଠାଇଲ
ଗେଣ୍ଡାପୁଅ ପରି ସେମାନେ
ମୋଠାରେ ତୁମର     ଏତେ ରଗ ବୋଲି
ଭାବି ତ ନଥିଲି ସ୍ୱପନେ । ୫ ।

ବୋଝ ଭାର ନେଇ     ସେମାନେ ଫେରିବେ
ଦେଖି ତୁମେ ଖୁସୀ ହୋଇବ
ମୋତେ ଶୂନ୍ୟ ହସ୍ତେ     ଦେଖି ଅନାଦର
ବିନା ଦୋଷେ ଘିନା କରିବ । ୬ ।



# ନିଷ୍କାମ ଭକ୍ତି

( ମନ ପୂଜାରେ ପାର୍ଥିବ ସୁଖ ମିଳେ ନାହିଁ )

ପଥର ଦେଉଳେ ପୂଜା ପାଇଲେ କି
ଭଲ ଲାଗେ ପ୍ରଭୁ ତୁମକୁ
ପାର୍ଥିବ ପଦାର୍ଥ ନୈବେଦ୍ୟ ହୋଇଲେ
ବୃଦ୍ଧି କରେ କି ମର୍ଯ୍ୟାଦାକୁ । ୧ ।

ଦୀପ-ଧୂପ-ଭୋଗ ଥାଳି ଧରି ଲୋକେ
ଧାଡ଼ି ଲଗାନ୍ତି ମନ୍ଦିରକୁ
ବ୍ରାହ୍ମଣ ମାଧ୍ୟମେ ଅରପିଣ ତାହା
ସାନ୍ତ୍ୱନା ଦିଅନ୍ତି ମନକୁ । ୨ ।

ପ୍ରଭୁ ପୂଜା କଲି ଅରିଷ୍ଟ କଟିବ
ଲଭିବି ସର୍ବ ସମ୍ପଦକୁ
ଦୁଃଖ ଜଂଜାଳ ତ ନ ରହିବ ଆଉ
ଗତି ମୋ ନିଶ୍ଚୟ ସ୍ୱର୍ଗକୁ । ୩ ।

ପଥର ମନ୍ଦିରେ ପୂଜାରେ କି ପ୍ରଭୁ
ସତରେ ପ୍ରସନ୍ନ ହୁଅ
ଓଜାଡ଼ି ସଂପଦ ଦୁଃଖ ଦୁରଦଶା
ସମସ୍ତ ଦୂରେଇ ଦିଅ ? । ୪ ।

ସତ ଏହା ନିଷ୍ଚେ, ନୋହିଲେ କମ୍ପା ମୁଁ
ଦୁଃଖେ ହୁଏ ମ୍ରିୟମାଣ
ମନ-ମନ୍ଦିରରେ ପୂଜା, ନୁହେଁ ପୂଜା
ମିଳିଲା ଏବେ ପ୍ରମାଣ । ୫ ।

ମନର ସରାଗ      ଅନ୍ତର ବିଶ୍ୱାସ
ନୈବେଦ୍ୟ ସ୍ୱରୂପ ଦେଇ
ମନ-ମନ୍ଦିରରେ      ପୂଜିଲି ମିନା ମୁଁ
ବୃଥା ଗଲା ତାହା ହୋଇ । ୬ ।

ତୁମ ରୁଚି ମତେ      ଜଣା ନ ପଡ଼ିଲା
ଭୁଲ୍ ବାଟେ କଲି ଗତି
ସୁଧାରି ଦିଅ ମୋ      ଭୁଲ୍‌କୁ ହେ ପ୍ରଭୁ
କରୁଛି ଏବେ ମିନତି । ୭ ।

ମନ-ମନ୍ଦିର ତ      ନୁହେଁ ଦୃଶ୍ୟ ମାନ
ସ୍ଥୂଳ ଚକ୍ଷ୍ୟ ତହିଁ ନାହିଁ
ସରାଗ, ବିଶ୍ୱାସ      ଫୁଲ ପାଣି ପରି
ତୁମକୁ ରୁଚଇ ନାହିଁ । ୮ ।

ମନରୁ ଏଣିକି      ପୋଛିବି କି ପ୍ରଭୁ
ପୂଜିବି ଯାଇଁ ଦେଉଳେ
ଠିକ୍ ଠିକ୍ କରି      ବତାଇ ଦିଅ ହେ
କହୁଛି ପ୍ରାଣ ଆକୁଳେ । ୯ ।



# ବଡ଼ପଣ

( ବଡ଼ପଣର କୁପ୍ରଭାବ ଶିଶୁମନରୁ ଦୂର ହୁଏ )

ସବୁରି ମନ କହେ, ମୁଁ ଅଟେ ବଡ଼,
ସାନ ମୁଁ ନୁହେଁ କମା, ଭାଙ୍ଗିବ ଗୋଡ଼ ? । ୧ ।

ଗୋଡ଼ ଭଙ୍ଗା ଠାଣିଟି, ସାନର ସାଜ,
ବଡ଼ ପଣକୁ ଏହା ନୁହଁଇ ସଜ । ୨ ।

ବଡ଼ ସାନ ପ୍ରଭେଦ, କାହୁଁ ଜାଣିବ,
ଅଛି କି ମାପକାଠି, ମାପିଣ ଦେବ ? । ୩ ।

ବଳ, ବପୁ, ସୌନ୍ଦର୍ଯ୍ୟ, ବିଦ୍ୟା ଓ ବୁଦ୍ଧି,
ଧନ, ସଂପଦ ପୁଣି ଯଶ ଓ ସିଦ୍ଧି । ୪ ।

ପ୍ରତିପତ୍ତି, ପଦବୀ, ଆଦି ବିସ୍ତର,
କରି ତୁଳନା ସିନା, ସିଦ୍ଧାନ୍ତ ସାର । ୫ ।

ମାପି ନୁହଁଇ ଏହା, ସଭିଙ୍କୁ ଜଣା,
ତଥାପି ଅହମିକା, କରଇ ବଣା । ୬ ।

କାଳେ ନ ଜାଣି କିଏ, ଭାବିବ ସାନ
ସଜାଗ ସବୁବେଳେ, ରହଇ ମନ । ୭ ।

ଚାଲି, ଚଳଣି, ଭାବ, ଭାଷା, ଚାହାଣି
ପ୍ରକାଶି ଥାଏ ବଡ଼ ପଣର ଠାଣି । ୮ ।

ମୋ ପରି ସିଏ ନୁହେଁ, ବଡ଼ ପାଠୁଆ
ଅଟେ ମୁଁ ବୃକଣରେ, ସିନା ଆଗୁଆ । ୯ ।

କେତେ ଦରମା ତାର, କପର ଟଳେ
ଉଠିଛି ଉପରକୁ, ଏ ବୁଝା କାଟେନ । ୧୦ ।

ମୋ ପରି ବପୁବନ୍ତ, ସିଏ ନୁହଁଇ,
ମୋ ପରି ପୋଷାକ ବା, କିଏ ପିନ୍ଧଇ । ୧୧ ।

ଏପରି ଭାବମାନ, ଜାଗେ ମନରେ
ଭାବ ପ୍ରକଟିଥାଏ, ବ୍ୟବହାରରେ । ୧୨ ।

ବାଦ୍ୟକାର, ଖେଳାଳୀ, ପୁଣି ଲେଖକ
ଗାୟକ, ଚିତ୍ରକର, ଗ୍ରାମ୍ୟ କୃଷକ । ୧୩ ।

ଅଭିନେତା, ନର୍ତ୍ତକ, ଆଉ ଯେତେକ
ଉଚ୍ଚ ପଦାଧିକାରୀ, ପୁଣି ଶିକ୍ଷକ । ୧୪ ।

କାହାକୁ ଏ ଭାବନା, ଛାଡ଼ୁଛି କୁହ
ଧାଉଛି ସମସ୍ତଙ୍କୁ, ବଡ଼ତ୍ୱ ମୋହ । ୧୫ ।

ବଡ଼ ସାନ ଭେଦଟି, ବିଭୁ ଭିଆଣ
ଉଠାଇବାକୁ ନର, ନୁହେଁ ଭାଜନ । ୧୬ ।

ଅଶେଷ ରୂପ ଏହି, ଭେଦର ପୁଣି
ମନୁଷ୍ୟ ଶକ୍ତି ତାହା, ନପାରେ ଜାଣି । ୧୭ ।
ଯାହାକୁ ଯେଉଁପରି, ଗଢ଼ିଛି ବିହି
ଯେପରି ବୁଦ୍ଧି, ଚିନ୍ତା, ଦେଇ ଅଛଇ । ୧୮ ।
ତଦନୁସାରେ ନର, କରଇ ଗତି
ପରିବର୍ତ୍ତନ ଏଥେ, ନୁହଁଇ ଶକ୍ତ । ୧୯ ।
ବିଦ୍ୟାରେ କିଏ ବଡ଼, ଧନରେ କିଏ
ପ୍ରତିପତ୍ତିରେ କିଏ, ବଡ଼ ବୋଲାଏ । ୨୦ ।
ବୁଦ୍ଧିମାନ୍ ଗୁଣକ୍, ବୋଲି କେ ଖ୍ୟାତ
ଅଳ୍ପ ବିଦ୍ୟାରେ ପୁଣି, କେ ଜ୍ଞାନବନ୍ତ ! ୨୧ ।
କିଛି ନଥାଇ ଅଛି, ବପୁ ବଳିଷ୍ଠ
ଶରୀର କର୍ମରେ ସେ, ବୋଲାଏ ଶ୍ରେଷ୍ଠ । ୨୨ ।
ଖ୍ୟାତି କେ ଲଭିଅଛି, କରିଣ ନାଚ
ଗୀତ ବୋଲିରେ କିଏ, ଅଟଇ ଉଚ୍ଚ । ୨୩ ।

ସାହିତ୍ୟ ଚର୍ଚ୍ଚା ପାଇଁ କେ ପୁରସ୍କୃତ
ବିଦ୍ୟା ନଥାଇ ଲେଖେ କେ ଭାଗବତ । ୨୪ ।

ଉତ୍କୃଷ୍ଟ କୃଷି କର୍ମ ପାଇଁ କେ ଖ୍ୟାତ
ଭଲ ଖେଳାଳୀ ଭାବେ କେ ପରିଚିତ । ୨୫ ।

ଅତି ବ୍ୟାପକ ଭେଦ ଏହି ପ୍ରକାରେ
ଶେଷ ନହେବ ଏହା ବରଣିବାରେ । ୨୬ ।

ଧନରୁ ବିଦ୍ୟା, ଅବା ବିଦ୍ୟାରୁ ଧନ
ବୁଦ୍ଧିରୁ ଶ୍ରମ ଅବା ଶ୍ରମରୁ ଜ୍ଞାନ । ୨୭ ।

କିଏ କାହାଠୁ ବଡ଼, କିଏ ବା ସାନ
ମନୁଷ୍ୟ ବିଚାରରେ ନୁହେଁ କଳନ । ୨୮ ।

ଯେଝା ଗୁଣରେ ଯେଝା ବଡ଼ ଅଟଇ
ତୁଳନାରେ ପ୍ରମାଦ ସିନା ଘଟଇ । ୨୯ ।

ଗାୟକଠୁ ନର୍ତ୍ତକ ହେବକି ସାନ
ଶିକ୍ଷକଠୁ ଶ୍ରମିକ କମ୍ପା ନଗୁନ । ୩୦ ।

ଜମି କର୍ଷଣ କରି କୃଷକ ଭାଇ
ଜୀବନ ବଞ୍ଚାଉଛନ୍ତି ଖାଦ୍ୟ ଯୋଗାଇ । ୩୧ ।

ହାକିମର କାମ କି ମହତ୍ତର,
କମ୍ପା କୃଷକ ହେବ ତାଠୁ ଇତର । ୩୨ ।

ସମାଜ ପାଇଁ ବିଦ୍ୟା ଯେପରି ଲୋଡ଼ା,
ଶ୍ରମ ସେପରି ନୁହେଁ ଭାବୁଛ ପରା । ୩୩ ।

ଶ୍ରମିକ ଶ୍ରମ ଯେବେ ନ କରେ ଦାନ,
ସମାଜର ଅବସ୍ଥା ମନକୁ ଆଣ । ୩୪ ।

ସମାଜ ହିତ ପାଇଁ ସବୁ କରମ,
ସହଯୋଗ କରିବା ଆମ ଧରମ । ୩୫ ।

ଅବଦାନରେ ବଡ଼ ସାନ ବିଚାର,
ରହିବ ନାହିଁ ଠିକେ ହେଲେ ଉଦାର । ୩୬ ।

ଜାମଂଣେ, ହୁଅ କଥା ମନେ ବିଚାର,
ଏକା ପ୍ରକାର କାମ ଉଭୟଙ୍କର । ୩୭ ।

ବ୍ରାହ୍ମଣ କାମ ଶୂଦ୍ର ଦ୍ୱାରା ନ ହୁଏ,
ଶୂଦ୍ର କାମ ବ୍ରାହ୍ମଣ କରି ନ ଥାଏ । ୩୮ ।

ବ୍ରାହ୍ମଣ ବଡ଼ ମାତ୍ର ଶୂଦ୍ର ନ ଥିଲେ,
ଶୂଦ୍ରର କାମ ବନ୍ଦ ରହଇ ଭଲେ । ୩୯ ।

ବ୍ରାହ୍ମଣ ଠାରୁ ଶୂଦ୍ର ନୁହେଁ ନ୍ୟୂନ,
କାମ ଦୃଷ୍ଟିରୁ ଦୁହେଁ ନିଶ୍ଚେ ସମାନ । ୪୦ ।

ବଡ ସାନ କରମ ସିନା ମିଶିଣ,
ପୂର୍ଣ୍ଣାଙ୍ଗ ହୋଇ ହିତ କରେ ସାଧନ । ୪୧ ।

ବଡ଼ ସାନ ଦୃଷ୍ଟିରେ ଲାଭ ନଥାଇ,
ଅଯଥା ଖେଦ ଭାବ ସଞ୍ଚରି ଥାଇ । ୪୨ ।

ଯାହାକୁ ସାନ ଭାବ ହେୟ କରିବ,
ତୁମକୁ ସ୍ନେହ ସିଏ କେବେ ନଦେବ । ୪୩ ।
ସ୍ନେହ, ସୌହାର୍ଦ୍ଦ୍ୟ ଭାବ ରହଇ ନାହିଁ,
ଦ୍ୱେଷ, ବିରାଗ ତାର ସ୍ଥାନେ ଜନ୍ମଇ । ୪୪ ।
କାହାକୁ ବଡ ଅବା କାହାକୁ ସାନ,
ନ ବିଚାରି ବିନୟ ଭାବକୁ ଘେନ । ୪୫ ।
ଉଦାର ହୋଇ ଯେବେ ନିଜକୁ ସାନ,
ମଣିବ, ବଡ଼ପଣ ନୋହିବ ମ୍ଲାନ । ୪୬ ।
ବରଂ ଅଧିକ ଭାବେ ସାନ ଘେନିବ,
ବିନୟେ ଅବନତ ଆପେ ହୋଇବ । ୪୭ ।
ଯାହାର ଯାହା ଗୁଣ, ତା ସର୍ବେ ଜଣା,
ନିଜେ ପ୍ରକାଶିଲେ ତା ନୁହେଁ ଦିଗୁଣା । ୪୮ ।
କୁପ୍ରବୃତ୍ତି ଯା ଯାହା ବଡ଼ପଣର,
ବିନୟ ସହଯୋଗେ ହୁଅଇ ଦୂର । ୪୯ ।
ଏକ ଈଶ୍ୱରଙ୍କର ସର୍ବେ ସନ୍ତାନ,
ଭ୍ରାତୃ ଭାବଟି କିମ୍ପା ନ ଛୁଏଁ ମନ । ୫୦ ।

❋

# ବିବେକ

( ଦୁଃଖ କଷ୍ଟ ଭେଟିଲେ ସୁଦ୍ଧା ବିବେକୀ ଲୋକ ଧର୍ମପଥ ଛାଡ଼େ ନାହିଁ )

ତୁମ ଦାତାପଣ ଖାଲି ନାଁକୁ
ମୋ କଥାରୁ ମୁହିଁ ଜାଣୁ ଅଛୁ ତୁମ୍ଭେ,
ଦିଅ ନାହିଁ କିଛି କାହାକୁ,
କଳ କୌଶଳେ ମାଗିଲେ ଯେ ଯାହା
ସାକ୍ଷୀ ପରି ଦେଖ ତାହାକୁ । ୧ ।
ନିସ୍ପୃହ ହୋଇ ଯେ ଅନାଇ ରହିଲ,
ତୁମ ହାତ ଟେକା ଦାନକୁ,
ଅନାଇ ଅନାଇ ଦିନ ଚାର ପରେ
ନମିଳଇ କିଛି ତାହାକୁ । ୨ ।
ଭରସା ହରାଇ ଧରେ ଯେବେ ସିଏ
ପେଞ୍ଚୁଆ ମାରଣ ମନ୍ତ୍ରକୁ
ନାଲି ଆଖି କରି ଡରିଅ ତାହାକୁ
ଛାଡ଼ନା ଧରମ ପଥକୁ । ୩ ।
ନିସ୍ପୃହଙ୍କ ପାଇଁ ଟେଙ୍କିଛ ଧରମ
ସବ ଖୋଲ୍ ମନ୍ତ୍ର ବନ୍ଧୁଆଙ୍କୁ
ଏ ବାନ୍ଧ ବିଶ୍ୱର ମନ୍ତ୍ର କି ଦେହ ତୁମ୍ଭ
ସୁଖ ଲାଗେ ତୁମ ମନକୁ ? । ୪ ।
ତୁମ ପରେ କେହି ବଡ଼ ନାହିଁ ବୋଲି
ଦ୍ୱିଧା ମନ୍ତ୍ରର ଶାସନକୁ
ନିରୁପାୟ ହୋଇ ଆଦରି ନେଇଛୁ
ଆପତ୍ତି କରିବୁ କାହାକୁ ? । ୫ ।

*

# ସମର୍ପଣ

( ମନ ନଦେଲେ ବାହାର ପୂଜା ପୂଜା ଛଳନା ନୁହେଁ ଆଉ କଣ ? )

ବିଶ୍ୱ ଜୀବନ ହେ
ଭୁଲିଲକି ଦୁଃଖୀ ଜନକୁ ?
ଦୁଃଖେ ପଡ଼ି ଡାକି          ଡାକି ଥକି ଗଲି
ନ ଶୁଭିଲା ତୁମ କାନକୁ । ୧ ।
ଦୁଃଖୀ ଜନ ଡାକ          ଶୁଣି ବୋଲି ପ୍ରଭୁ
ଦମ୍ଭ କରିଥିଲି ମନକୁ
ବଡ଼ ହୋଇ ଯେବେ          ଅମାନ୍ତ କରିବ
ଗୁହାରି କରିବି କାହାକୁ ? । ୨ ।
ଫୁଲ, ପାଣି ଦେଇ          ପୂଜା ଯେ କରିଲା
ଭକ୍ତ ପଦ ଦେଲ ତାହାକୁ
ତା ଡାକ ବେଳକୁ          ବଧିରତା ରୋଗ
ଛୁଡ଼ିଯାଏ ଭଲେ ତୁମକୁ । ୩ ।
ମନ ପ୍ରାଣେ ଧ୍ୟାଇ          ଶ୍ରୀପଦ କମଳ
ଜୀବନ ସରିଲା ବେଳକୁ
ଅଭକ୍ତ କହିଲ          ଡାକ ନ ଶୁଣିଲ
ଦୁଃଖ ଟପିଲଣି ସୀମାକୁ । ୪ ।
ମନେ ପୂଜୁଅଛି          ଛଳ ମଣି ସେହି
ଫୁଲ, ପାଣି ଦିଆ ପୂଜାକୁ
ଘେନାକର ପ୍ରଭୁ          ଅଭକ୍ତ ନୁହେଁ ମୁଁ
ଶୁଣ ବାରେ ମୋର ଡାକକୁ । ୫ ।

ଦୁଃଖ ଭୋଗି ଦିନା　　　　　　କାଟିଲି ଜୀବନ
ଭୁଲି ନାହିଁ ତୁମ ପଦକୁ
ମଠ, ମନ୍ଦିରକୁ　　　　　　ଯାଇ ନାହିଁ ଦିନା
ଅନ୍ତରେ ଥାପିଛି ତୁମକୁ । ୬ ।
ଭଜି ତୁମ ପଦ　　　　　　ଦୁଃଖୀ ଯେବେ ହେଲି
ସୁଖୀ କର ତୁମେ କାହାକୁ
ବଧିରତା ଯାଙ୍କ　　　　　　ବାତୁଳତା ରୋଗ
ଧରଲାଣି କହେ ତୁମକୁ ? । ୭ ।
ମାଗୁନି ସଂପଦ　　　　　　ସଂସାର ବୈଭବ
ମାଗୁଣି ଏତିକି ତୁମକୁ
ସ୍ୱୀକାର କର　　　　　　ମୋ ପୂଜା ପଦ୍ଧତି
ମନ ପ୍ରାଣ ସମର୍ପଣେକୁ । ୮ ।



# ପାପପୁଣ୍ୟ

( ଯାହା ସମାଜର ହିତକର, ତାହା ପୁଣ୍ୟ ଓ ତାହାର ବିପରୀତ ପାପ )

ମନ୍ତ୍ରବାଣୀ ପୋଥି ଭିତରେ ରହିଛି
ମନକୁ ସେ ଛୁଏଁ ନାହିଁ,
ମୁହେଁ ମନ୍ତ୍ର କହି ଅମନ୍ତ୍ର କାମରେ
ମାତି ଅଛୁ ଆମେ ସଭି । ୧ ।

ନୂଆ କଥା କେହି ବୟାନ କରୁନି
ସବୁ ଆମ ପରମ୍ପରା,
ସୁଜାଣ, ଅଜାଣ ନିର୍ବିଶେଷେ ତାହା
ରକ୍ଷିବାରେ ବ୍ୟଗ୍ର ପରା । ୨ ।

ଭଲ, ମନ୍ଦ, ପାପ ପୁଣ୍ୟର ବିଚାର
ରହିଛି ଶାସ୍ତ୍ରରେ ଭରି,
ପୁଣ୍ୟେ ସ୍ୱର୍ଗ, ପାପେ ନରକ ପ୍ରାପତି
ଚିର ଏ ବିଚାର ଧାରି । ୩ ।

ଭଲ କାମ କଲେ ନିଜେ ସୁଖୀ ହୋଇ
ଅନ୍ୟକୁ ସୁଖୀ କରାଏ,
ସମସ୍ତ ସମାଜ ସୁଖୀ ହେଲେ ଭଲା
ସ୍ୱର୍ଗ କି ଅନ୍ୟତ୍ର ଥାଏ ? । ୪ ।

ସ୍ୱରଗ, ନରକ ନିଜ କର୍ମ ଫଳ
ବୁଝି ଭଲେ ଏହା ଭାଇ
ଏହି ଭବେ ତାହା ଭୋଗିବାକୁ ହୁଏ
ଅନ୍ୟତ୍ର ଯିବାର ନାହିଁ । ୫ ।

ଏ ଜନ୍ମର କର୍ମ  ପର ଜନ୍ମ ଭାଗ୍ୟ
ପୂର୍ବ କର୍ମ ଏବେ ଭାଗ୍ୟ
କର୍ମ ଚକ୍ରର ଏ  ରହସ୍ୟ ବୁଝିବା
ପାଇଁ ହେବାନଙ୍କ ଯୋଗ୍ୟ ? । ୬ ।

ବୁଝି ଏ ରହସ୍ୟ  ସୁକର୍ମରେ ମନ୍ତ
ଦେବାକୁ କରେ ମିନତି
ସୁକର୍ମ ବଳରେ  ସର୍ବଜନ୍ମ ସୁଖେ
ବଢନ୍ତୁ ସମାଜ ଗତି । ୭ ।

ମନ୍ଦ କାମ ମନ୍ଦ  କଥା ମନ୍ଦ ଚିନ୍ତା
ତ୍ୟାଗରେ ହୋଇବା ବ୍ରତୀ
ନିଜେ ହସି, ହସ  ଅନ୍ୟର ମୁହଁରେ
ଦେଖିବାରେ ଦେବା ମନ୍ତ । ୮ ।

ଯାହା ଭଲ ପୁଣି  ବ୍ୟକ୍ତି ସମାଜର
ସାଧନ କରଇ ହିତ
ଶୁଭ ଶୋଭମାସ୍ତୁ  ବୋଲି ଶାସ୍ତ୍ରେ ତାହା
ହୋଇ ଅଛିଟି କଥିତ । ୯ ।

ଶୋଭମାସ୍ତୁ ତାର  ଧାର ବୁହାଇଲେ
ଜୀବନର ସ୍ତରେ ସ୍ତରେ
ଦୁଃଖ, ଦୁରୁଦଶା  ଆପେ ପୁଞ୍ଛିଯିବ
ସନ୍ଦେହ ନାହିଁ ଏଥିରେ । ୧୦ ।

# ଭ୍ରମ

( ଭଗବାନ ସର୍ବତ୍ର ବିଦ୍ୟମାନ । କେବଳ ମନ୍ଦିରରେ ତାଙ୍କୁ ଖୋଜିବା ଭ୍ରମ ଅଟେ । )

ଭିତରେ, ବାହାରେ    ଜଳେ, ସ୍ଥଳେ, ନଭେ
ବୃକ୍ଷଲତା ପ୍ରାଣୀ ଦେହେ
ସବୁଠାରେ ବ୍ରହ୍ମ    ସତ୍ୟ ବିରାଜିତ
ନିଃସନ୍ଦେହେ ଶାସ୍ତ୍ର କହେ । ୧ ।

ଅଣୁ ପରମାଣୁ    ସମସ୍ତ ଜଗତ
ବ୍ରହ୍ମର ପ୍ରକାଶ ମାତ୍ର
ଜୀବ ରୂପେ ପୁଣି    ବ୍ୟାପି ରହିଅଛି
ମୋର ଏ ସମସ୍ତ ଗାତ୍ର । ୨ ।

ଗୋଟିଏ ପଦରେ    ସରବ ବ୍ୟାପକ
କହିଥାନ୍ତି ଜ୍ଞାନୀ ମାନେ
'ତତ୍ତ୍ୱମସି' ପୁଣି    'ସୋହଂ' ପଦକୁ
ଉଚ୍ଚାରି ଥାନ୍ତି ସେମାନେ । ୩ ।

ସେହିମାନେ ପୁଣି    ବ୍ରହ୍ମ ପୂଜା ପାଇଁ
ମନ୍ଦିରକୁ ଧାଇଁ ଥାନ୍ତି
କି ଭାବ ପ୍ରଭାବେ    କଥା ଓ କାମରେ
ଭିନ୍ନତା ଆଚରି ଥାନ୍ତି । ୪ ।

'ଜୀବ ବ୍ରହ୍ମ ଏକ'  'ମୁଁ ଅଟଇ ବ୍ରହ୍ମ'
କୁଅଜ୍ଞେ ଯାଏ ସେ ଭାବ,
ମନ୍ଦିର ନଗଲେ  ପୂଜା ଦରଶନ
ହୋଇପାଏ ଅସମ୍ଭବ । ୫ ।

ଅନ୍ତର ଭିତରେ  'ମୁଁ' ଓ 'ମୋହର'
ଯିଏ କହୁଥାନ୍ତି ରହି,
ବ୍ରହ୍ମ ବିନା ତାହା  ଅନ୍ୟ କେହି ବୋଲି
ଭାବ ନାହିଁ କେବେ ଭାଇ । ୬ ।

ଅନ୍ତର ଭିତରେ  ଦର୍ଶନ କରନ୍ତି
ଧ୍ୟାନ ବଳେ ତାଙ୍କୁ ଯୋଗୀ,
ସେ ପନ୍ଥା ବରଜି  ମନ୍ଦିରରେ ଖୋଜି
ଖୋଜୁଥାନ୍ତି କାମୀ, ଭୋଗୀ । ୭ ।

ମନ୍ଦିରେ ଖୋଜିବା  ଭୁଲ୍ ନ ହେଲେ ବି
ମାତ୍ର ମନ୍ଦିରେ କେବଳ,
ଅଛନ୍ତି, ଅନ୍ୟତ୍ର  ନାହାନ୍ତି, ଭାବିବା
ନିଶ୍ଚୟ ଅଟଇ ଭୁଲ୍ । ୮ ।

ନ ଗଲେ ମନ୍ଦିର  ବୋଲି ଅନ୍ତକର
କହିବା କି ସମୀଚୀନ,
ପୂଜା ନୋହିବ କି  ଦିନରାତି ଯଦି
କରଇ ପ୍ରଭୁ ସ୍ମରଣ । ୯ ।

❋

# ଶୋଭନୀୟତା

( ଅଶୋଭନୀୟତା ବଭିନ୍ନ ରୂପରେ ସମାଜରେ ବ୍ୟାପ୍ତ ହୋଇଅଛି ।
ତାହା ଦୂର ହେଲେ ସମାଜ ସୁଖୀ ହେବ । )

ସୁଖୀ ହେବା ପାଇଁ କର ଯେବେ ଇଚ୍ଛା,
ଶୋଭନୀୟ କର ଆଗ ମନୋବାଞ୍ଛା ।୧।
ଶୋଭନୀୟତା କ ସୁଖରୁ ପୃଥକ୍,
ଯାହା ଶୁଭ, ତାହା ସୁଖର ପ୍ରତୀକ ।୨।
ଶୁଭଚନ୍ତା ଶୁଭ କର୍ମର ଜନନୀ,
ସୁଖୀ ହୁଏ ଶୁଭ ଚନ୍ତକ ଯେ ପ୍ରାଣୀ ।୩।
ସତ୍‌ଚନ୍ତା ସତ୍‌କର୍ମ ଆଗପଛ ହୋଇ,
ଚ଼ଲିଲେ, ଧରାରେ ସୁଖ ବରାଜଇ ।୪।
କାୟ, ମନ, ବାକ୍ୟ ତ୍ରିବିଧ କରମ,
ହେଉ ଶୋଭନୀୟ, ଘୁଞ୍ଚୁ ଅଧରମ ।୫।
ଦୁର୍ନୀତି, ଦୁର୍ଭାଷା, ଦୁରାଚାର ପୁଣି,
ଅଶୌଚ, ପୈଶୁନ, ଲାଞ୍ଚ, ମିଛ ବାଣୀ ।୬।
ବଭିନ୍ନ ରୂପରେ ଅଶୋଭନୀୟତା,
ହେଉଛି ସମାଜ ପୂର୍ବ କଳୁଷିତା ।୭।
ଲାଭ ପାଇଁ ଥୋକେ ମଦେ ବହ୍ୱଳତ,
ଅଧିକାଂଶ କନ୍ତୁ ଦୁଃଖେ ଜର୍ଜରିତ ।୮।
ସମୂଳେ ବନାଶ ଅଶୋଭନୀୟତା,
ନ ହେଲେ ନ ଘୁଞ୍ଚେ ଏହି ବଷମତା ।୯।

ବିଭୁନାମ ସ୍ମର କରିବା ଶପଥ,
ଖଣ୍ଡିବା ପାଇଁ ଏ ଦାନବର ହାତ ।୧୦।
ଚେଷ୍ଟାବଳେ ଏହା ହୋଇବ ସମ୍ଭବ,
ହସିବ ସମାଜ, ଶୋଭିବ ବିଭବ ।୧୧।



# ଅକାର

(ସବୁକଥା ବିଗ୍ଭରକୁ ନେଲେ 'ଅକାର' ହେଉଛି ଭଗବାନଙ୍କ ପାଇଁ ସାର୍ଥକ ଉପାଧି)

ନାମ ସିନା ରାମ ହୋଇଅଛି ମୋର
ନୁହେଁ ମୁଁ ପ୍ରକୃତ ରାମ,
ରାମ ଗୁଣ କାହୁଁ ଆସିବ ମୋ ଠାରେ
ଅଟଇ ମୁଁ ନରାଧମ । ୧ ।
ଗୁଣକୁ ଚାହିଁତ ମଣିଷର ନାମ
ହୁଏ ନାହିଁ ଧରା ତଳେ,
ଜନମ ବେଳରେ ବାପା ମାଆ ନାମ
ଦେଇଥାନ୍ତି ଶ୍ରଦ୍ଧା ବଳେ । ୨ ।
ଜନମ ବେଳରେ ଗୁଣ ଗ୍ରାମ କିଛି
ପଡ଼ ନଥାଏ ତ ଜଣା,
ନାମ ସବୁ ଲୋକ ନିଅନ୍ତି କଳାଙ୍କୁ
ଗଣିଲେ ହୋଇବ ବଣା । ୩ ।
'ପଦ୍ମ ଲୋଚନ' ନାମ ବହିଥାନ୍ତି
କେତେ କେତେ ଅନ୍ଧନର,
ପାଦ, ପାଣି ଯାର ବିକଳ ସେ ପୁଣି
ନାମ ବହିଥାଏ ବୀର । ୪ ।
ବଡ ହୋଇଗଲେ ପ୍ରତିଷ୍ଠା ପାଇଲେ
ଲଭନ୍ତି କେତେ ଉପାଧି,
ପଦ୍ମଶ୍ରୀ ଠାରୁ ଭାରତ ରତନ
ଅଟେ ଏହାର ପରିଧି । ୫ ।

ଗୁଣ, କୀର୍ତ୍ତି, ଯଶ ଚଉଳ ହୋଇଣ
ଦିଆ ଦୁଅଇ ଉପାଧି,
ନାମ ଯାହା ଥାଉ ଉପାଧି ବଳରେ
ଲଭ କରନ୍ତି ପ୍ରସିଦ୍ଧି । ୬ ।

ଉପାଧିଟି ହେଲା ପ୍ରକୃତ ଗୁଣର
ଉପଯୁକ୍ତ ପରିଚୟ,
ଉପାଧି ନଥିଲେ ନାମ ଥାଇ ମଧ୍ୟ
ବୋଲନ୍ତି ଅନାମଧେୟ । ୭ ।

ପ୍ରଭୁ ପରାତ୍ପର ଏହିପରି କେତେ
ନାମତ ଅଛନ୍ତି ବହି,
କଏ ତାଙ୍କୁ ଏହି ନାମ ସବୁ ଦେଲା
କୁହିତ ପାରଇ ନାହିଁ । ୮ ।

ନାହିଁ ବାପ ମାଆ ତାଙ୍କର ସିଏତ
ସମସ୍ତଙ୍କ ବାପ ମାଆ,
ଅଜ, ଅକାରଣ ବୋଲନ୍ତି ସିଏତ
ସବୁର ତାଙ୍କର ଠାଆ । ୯ ।

ମାଆ ନାହିଁ ଯାର ନାଆଁ ନାହିଁ ତାର
ଏକଥା ଆମକୁ ଜଣା
ଯେତେ ଯେତେ ନାମ ବିଭୁଙ୍କର ଅଛି
ନୁହେଁ ତା ନାମରେ ଗଣା । ୧୦ ।

ଅଜ ହେବାରୁ ସେ ଅନାମ ଅଟନ୍ତି
ମାତ୍ର ଉପାଧିରେ ଭରା,
ଯେତେ ଯେତେ ନାମେ ଡାକୁ ତାଙ୍କୁ ଆମେ
ସେ ସବୁ ଉପାଧି ପରା । ୧୧ ।

ହଜାରେ ହଜାରେ ଉପାଧି ବହିଛ
ଅଗଣନ ତୁମ ଗୁଣ,
ଉପାଧି ଦାତାଙ୍କୁ ଜଣାଥିବ ସିନା
ନ ପଶେ ଆମର ଜ୍ଞାନ । ୧୨ ।

ଗୁଣ କର୍ମ ଦେଖି ଉପାଧି ଦେବାର
ଅଛି ଯେଉଁ ପରମ୍ପରା,
ତୁମ କ୍ଷେତ୍ରେ ତାହା ପାଳିତ ହେବାର
ଜଣା ପଡୁନାହିଁ ପରା । ୧୩ ।

ଉପାଧି ଦାତାଙ୍କୁ ଲାଞ୍ଚ ଦେଇ ଅବା
ଅନ୍ୟ ଉପଗ୍ଚର କରି,
ଉପାଧି ଲଭିଛ ବଡ଼ ବୋଲାଇଛ
ଧନ୍ୟ ତୁମର ଗୁଭୁରି । ୧୪ ।

ହାଣ୍ଡିରୁ ଗୋଟିଏ ଚିପନ୍ତି ବୋଲିତ
ରହିଛି ଆମର କଥା,
ହଜାରେ ଉପାଧି ଭିତରୁ ଗୋଟିଏ
ପରଖି ଲାଗୁଛି ବ୍ୟଥା । ୧୫ ।

ଗୋଟିକ ଯେପରି ସମସ୍ତ ସେପରି
ନାହିଁ ସନ୍ଦେହ ଏଥିରେ,
ସମସ୍ତ ଉପାଧି ଭେଜାଲ ବୋଲିହିଁ
ପ୍ରତ୍ୟେୟ ଜାଗେ ମନରେ । ୧୬ ।
ଉପାଧି ବହିଛ 'ଦୀନବନ୍ଧୁ' ମାତ୍ର
ଦୀନଙ୍କୁ ଚିନାଅ ନାହିଁ,
ଦୀନର ବିକଳ ଡାକ ତୁମ କାନେ
ପ୍ରବେଶ କରଇ ନାହିଁ । ୧୭ ।
ଦୁଃଖ ପରେ ଦୁଃଖ ଭୋଗୁଥାଏ ସିଏ
ତୁମକୁ ବାଧଇ ନାହିଁ,
ଗୁଣ ନାହିଁ ଖାଲି ଉପାଧି ନେଇଛ
ଆମକୁ ଭଣ୍ଡିବା ପାଇଁ । ୧୮ ।
ବନ୍ଧୁ କ'ଣ କେବେ ବନ୍ଧୁର ଦୁଃଖରେ
ରହିପାରେ ହୋଇ ସ୍ଥିର,
ବନ୍ଧୁ ଦୁଃଖ ଦୂର କରିବା ପାଇଁ ସେ
ନିଶ୍ଚେ କରେ ପ୍ରତିକାର । ୧୯ ।

ତୁମେ କେଉଁ ଧନ     ଦୁଃଖ ନାଶିବାର
ଶୁଣାନାହିଁ ଏ ଯାବତ,
ମିଛେ ଧନବନ୍ତ     ଉପାଧି ବହିଛ
କହିବା କ ଅସଙ୍ଗତ ? । ୨୦ ।

ଭକତ ବତ୍ସଳ     ଉପାଧି ବହିଛ
ଭକ୍ତ ଜାଣେ ତୁମ ଗୁଣ,
ନିଶାରେ ତୁମକୁ     ଭଜୁଥାଏ ସିନା
ପାଇବାଟି ଅଟେ ଶୂନ । ୨୧ ।

ଉପାଧି ନ ହୋଇ     ନାମ ହୋଇଥିଲେ
ଦୋଷତ ହୁଅନ୍ତା ନାହିଁ,
ନାମ ଅନୁସାରେ     ଗୁଣ ନ ହୋଇବା
ଆଗରୁ କହି ଅଛଇ । ୨୨ ।

ଉପାଧି ଗୁଡ଼ିକ     ନିରର୍ଥକ ବୋଲି
ହେଲା ଏବେ ପ୍ରମାଣିତ,
ଉପାଧି ରହିତ     ଗୁଣକର୍ମ ଶୂନ୍ୟ
ବୋଲିବା ହେବ ଉଚିତ । ୨୩ ।

ଉପାଧିରେ ଯଦି     ସଉକ ତୁମର
ଗୁଣ କର୍ମ ଦେଖି ଘେନ,
'ଅକାର' ହୋଇଲେ     ଠିକଣା ହୋଇବ
ବୋଲି ଭାବୁଛି ମୋ ମନ । ୨୪ ।

କାଛି ନ କରିବା     ଅଭ୍ୟାସ ତୁମର
'ଅକାର' ଉପାଧି ନିଅ,
ଆମ କର୍ମଫଳ     ଭୋଗୁଥାଉ ଆମେ
ତୁମେ ବସି ରହିଥାଅ । ୨୫ ।



# ସଂସ୍କୃତି

( ସାଂସ୍କୃତିକ ବିକାଶ ପାଇଁ ଆର୍ଥିକ ଅବଶ୍ୟକତା ପୂରଣ ହେବା ଦରକାର । )

ଖାଇବା, ଶୋଇବା ଆଦି ଯେତେକ କରମ
ଶରୀର ପାଇଁ ପାଳିବା ପ୍ରାଣୀର ଧରମ । ୧ ।
ପଶୁ ଏହା କରେ, ତାର ନାହିଁ ଚିନ୍ତା ଶକ୍ତି,
ଭଲ ମନ୍ଦ ବାଛିବାରେ ନାହିଁ କଣ୍ଡମତି । ୨ ।
ଖାଦ୍ୟ ସଂଗ୍ରହରେ ଲାଗିଥାଏ ଦିବାରାତ୍ର,
ସାମାନ୍ୟ ବାଧାରେ ଧରେ ପ୍ରଚଣ୍ଡ ମୂରତି । ୩ ।
ବାସ, ବେଶ, ଶୌଚ ଆଦି ଅଜଣା ତାହାକୁ,
ସ୍ନେହ, ଶୀଳ, ଦୟା ତାର ନଥାଏ କାହାକୁ । ୪ ।
ଦଣ୍ଡକୁ ମାତର ତାର ଥାଏ ସଦା ଭୟ,
ଦଣ୍ଡ ପାଇଲେ ସହଜେ ହୋଇଥାଏ ଅଧ୍ୟ । ୫ ।
ଯେତେ ଯେତେ ସଦାଚାର ନୀତି ଅଛି ରହି,
ମନୁଷ୍ୟ ପାଇଁ ସେ ସବୁ, ପଶୁ ପାଇଁ ନୋହି । ୬ ।
ମନୁଷ୍ୟ ସେ ସବୁ ଯଦି ନକରେ ପାଳନ,
ପଶୁଠାରୁ କଦାପି ସେ ନୋହିବଟି ଭିନ୍ନ । ୭ ।
ମନୁଷ୍ୟ ରୂପରେ ସିଏ ପଶୁଟିଏ ହୋଇ,
କଟାଏ ଜୀବନ ତାର ଭଲମନ୍ଦ ନାହିଁ । ୮ ।
ମନୁଷ୍ୟକୁ ଚିନ୍ତାଶକ୍ତି, ବିବେକ, ବିଚାର,
ଦୟା ଦିଅନ୍ତି ଦେଇଛନ୍ତି ବିଭୁ ପରାତ୍ପର । ୯ ।
ତାର ଉପଯୋଗ ଯେବେ ନକରଇ ସେହି,
ପଶୁପରି ଖାଇ ପିଇ ଶରୀର ଧରଇ । ୧୦ ।

ଭଲମନ୍ଦ ବିଚାରଣା ନଥାଏ ତହିଁରେ,
ଉଚ୍ଚ କଳ୍ପନା ପ୍ରବେଶ ନ କରେ ମନରେ । ୧୧ ।
ମନୁଷ୍ୟ ସମାଜ ହେବ ପଶୁର ସମାଜ,
ଉଭେଇ ଯିବ ସମାଜୁ ସବୁ ସଜବାଜ । ୧୨ ।
ଶରୀର ରକ୍ଷଣେ ମଧ୍ୟ ଯତ୍ନ ପ୍ରୟୋଜନ,
ନକଲେ ଅକାଳେ ତାର ଘଟେ ଅବସାନ । ୧୩ ।
ଶରୀରର ସଉଷ୍ଠବ ସୁରକ୍ଷଣ ପାଇଁ,
ନାନା ଉପଚାର ମଧ୍ୟ ଲୋଡ଼ା ହୋଇଥାଇ । ୧୪ ।
ଭଲବାସ, ଭଲ ବେଶ, ଭଲଖାଦ୍ୟ ପାଇଁ,
ଠାଣି ମାଣି କମ ଦମ ବିକାଶିବା ପାଇଁ । ୧୫ ।
ମନରେ ଆକାଙ୍କ୍ଷା ଯଦି ନଜାଗଇ ତାର,
କିପରି ଲଭିବ ତାହା, ମନରେ ବିଚାର । ୧୬ ।
ଏ ସବୁ ପରିପ୍ରକାଶ ନହେଲେ ଜୀବନେ,
ପଶୁର ଜୀବନ ଠାରୁ କିମ୍ପା ହେବ ଭିନ୍ନେ ? । ୧୭ ।
କଳା ସାହିତ୍ୟ, ବିଜ୍ଞାନ, ଦର୍ଶନାଦି ବୃତ୍ତି,
ମନୁଷ୍ୟ ଚିନ୍ତାରୁ ହୋଇଥାଏ ଉତପତ୍ତି । ୧୮ ।
ଶରୀର ମନ ଉତ୍କର୍ଷ ଘଟଇ ଯହିଁରେ,
ସଂସ୍କୃତି ବୋଲି ତାହାକୁ କହନ୍ତି ସୁଧୀରେ । ୧୯ ।
ସମାଜର ମାନଦଣ୍ଡ ସଂସ୍କୃତି ଅଟଇ,
ଉନ୍ନତ କି ଅନୁନ୍ନତ ସଂସ୍କୃତି କହଇ । ୨୦ ।
ପାଶ୍ଚାତ୍ୟ ଦେଶକୁ ଆମେ ଉନ୍ନତ କହୁଛେ,
କାରଣ କଅଣ ବୋଲି କେବେକି ଭାବିଛେ ? । ୨୧ ।
ମନୁଷ୍ୟ ଶକ୍ତିର ସେଠି ଘଟିଛି ବିକାଶ,
ପଶୁପରି ଆମଦେଶେ ମନୁଷ୍ୟର ବାସ । ୨୨ ।
ବିକାଶର ବେଗ ଆମ ଦେଶେ ଅତି କ୍ଷୀଣ,
ଦରିଦ୍ରତା ଅଟେ ତାର ଅସଲ କାରଣ । ୨୩ ।
ଖାଇବାକୁ ଅନ୍ନ ନାହିଁ ପିନ୍ଧିବାକୁ ବସ୍ତ୍ର,
ବାସ ନାହିଁ ବାତ୍ୟାହେଲେ ରଖିବାକୁ ଗାତ୍ର । ୨୪ ।

ଶିକ୍ଷା ନାହିଁ ବୁଝନ୍ତିନ ଜୀବନ ରହସ୍ୟ,
ଘଟଣା ପ୍ରବାହ ମଧ୍ୟେ ତାଙ୍କୁ ଅପ୍ରକାଶ୍ୟ । ୨୫ ।
ପଶୁପରି ଗଣ୍ଡେ ଖାଇ ବଞ୍ଚାନ୍ତି ଜୀବନ,
ନଜାଣନ୍ତି ଜୀବନର ଅନ୍ୟ ସୁଖମାନ । ୨୬ ।
ଅନ୍ନରେ ଆବଦ୍ଧ ଏଠି ଜୀବନ ଦର୍ଶନ,
ସରସ ସୁନ୍ଦର ଚିନ୍ତା ଏଠାରେ ସ୍ୱପନ । ୨୭ ।
ସୃଜନ ଶୀଳ ପ୍ରବୃତ୍ତି ମନୁଷ୍ୟ ମନର,
ଅଭାବ ଜ୍ୱାଳାରେ ବନ୍ଦ, ହୋଇଛି ଅଚଳ । ୨୮ ।
କୋଟି କୋଟି ଲୋକ ଯହିଁ ରହନ୍ତି ଏପରି,
ଉନ୍ନତ ଚିନ୍ତା କି କେବେ ସେଠାରେ ପ୍ରସରି ? । ୨୯
ସର୍ବନିମ୍ନ ଭାବେ ଯାହା ଜୀବନ ଲୋଡ଼ଇ,
ନପାଇଲେ ତାହା, କାହୁଁ ସଂସ୍କୃତି ଆସଇ । ୩୦ ।
ନିମ୍ନତମ ଗୃହଦାବି ହୋଇଲେ ପୂରଣ,
ଲୋଡ଼ଇ ମନ ତାହାର ଉନ୍ନତି କରଣ । ୩୧ ।
ସୃଜନ ପ୍ରବୃତ୍ତି ତାର ହୁଏ ଜାଗରିତ,
ବିକାଶର ଧାରା ବହେ ହୋଇ ଅବାରିତ । ୩୨ ।
ବିଭିନ୍ନ ବିଭାବେ ତାହା ହୁଅଇ ଫଳିତ,
ସେତେବେଳେ କୁହାଯାଏ ସମାଜ ଉନ୍ନତ । ୩୩ ।
ଆମଦେଶେ ଏ ପ୍ରକ୍ରିୟା ଚଳିଛି ନିଷ୍କ୍ରିୟ,
ଅର୍ଦ୍ଧାଧିକ ଲୋକ ଯେଣୁ ତହିଁରୁ ବଞ୍ଚିତ । ୩୪ ।
ନୂତନ ପୂର୍ତ୍ତ କରମ କଣ୍ଟୁଦନ ପାଇଁ,
ବନ୍ଦରଖି ପୂର୍ଣ୍ଣଧ୍ୟାନ ଦେଲେ ଏଥିପାଇଁ । ୩୫ ।
ଉତ୍କଟ ଦାରିଦ୍ର୍ୟ ଦେଶୁ ହୁଅନ୍ତା ଲୋପନ,
ସଂସ୍କୃତି ବିକାଶ ହେବେ ହୁଅନ୍ତା ସାଧନ । ୩୬ ।
ଅବଶ୍ୟ ଏ ପାଇଁ ଲୋଡ଼ା ସୁବିପୁଳ ଅର୍ଥ,
ସରକାର ଛଡ଼ା ଅନ୍ୟ ନୁହଇ ସମର୍ଥ । ୩୭ ।



# ମାୟା

( ମାୟା ବା ପ୍ରକୃତ ଭଗବାନଙ୍କ ଶକ୍ତି । ମାୟାଦ୍ୱାରା ଜଗତ ଆତଯାତ ହେଉଛୁ । ଭଗବାନ ଉଦାସୀନ ଦ୍ରଷ୍ଟା ସ୍ୱରୂପ ବିଦ୍ୟମାନ )

ମାୟାଧର ପ୍ରଭୁ ମାୟା ବିସ୍ତାରିଛ
ମାୟାକୁ ଦେଇଛ କରଣୀ,
ଭଙ୍ଗା ଗଢ଼ା ଆଦି ସକଳ କର୍ମରେ
କରିଛ ତାହାକୁ ଅଗ୍ରଣୀ
ଆହେ ମାୟାଧର ।
ଏକ ଅଟଇ ଠିକଣା ବ୍ୟବହାର ? । ୧ ।
ମୂକ ହୋଇ ନଜେ ସାକ୍ଷୀ ସାଜିଅଛ
କାହିଁରେ ନଦିଅ ହାତ,
ତୁମ ବଳ ପାଇ ମାୟା କରୁଅଛି
ଜଗତକୁ ଆତଯାତ
ଆହେ ମାୟାଧର ।
ତୁମ ଉଦାସୀନତା କି ସୁନ୍ଦର ? । ୨ ।
ମାୟା କବଳରେ ପଡ଼ି ପ୍ରାଣୀ ବର୍ଗ
ଭୋଗନ୍ତି ଅଶେଷ ଯାତନା
ଜନ୍ମ, ମୃତ୍ୟୁ, ଜରା, ରୋଗ, ଶୋକ ଆଦି
କରିବ କିଏ ତା କଳନା
ଆହେ ମାୟାଧର ।
ସମର୍ଥ କିଏ ତା ରୋକିବାର ? । ୩ ।

ତା ସାଙ୍ଗକୁ ପୁଣି          କାମ, କ୍ରୋଧ, ଲୋଭ
ସାଜ ସହରେ ମାୟାର,
ଧର୍ମ ପଥରୁତ          ଦୂରେଇ ନଅନ୍ତି
କଷଣ ଦଅନ୍ତି ଅପାର
ଆହେ ମାୟାଧର
ଏହା ହୁଏକ ତୁମକୁ ସୁଖକର ? । ୪ ।

ମାୟା ଆବରଣେ          ଲୁଚି ରହ ତୁମେ
ପ୍ରାଣୀତ ନଦେଖେ ତୁମକୁ
ତୁମେ କିନ୍ତୁ ସବୁ          ଦେଖୁଥାଅ ପ୍ରଭୁ
କାହିଁରେ ନ ଦିଅ ମନକୁ
ଆହେ ସର୍ବଦ୍ରଷ୍ଟା
ତୁମ ଦୟା ବିନା ସିନା ପ୍ରାଣୀ ଭ୍ରଷ୍ଟା । ୫ ।

ତୁମ ଦରଶନ          ତୁମ ଇଚ୍ଛା ବିନା
ନହୁଟେ ମାୟାର ଯାତନା
କେପରି କାଟିବ          ମାୟାଜାଲ ପ୍ରଭୁ
କରି ନପାରେ ମୁଁ କଳ୍ପନା
ଆହେ ଇଚ୍ଛାମୟ
ଇଚ୍ଛାକର ହଟିଯାଉ ଦୁଃଖଚୟ । ୬ ।

ତୁମକୁ ଭଜିଲେ          ତୁମକୁ ଜପିଲେ
ତୁମଠାରେ ମନ ଥାପିଲେ
ଖୁସିହୋଇ ତୁମେ          ଦରଶନ ଦିଅ
ମାୟା ଦୂରେଯାଏ ସହଜେ
ଆହେ ମାୟାଧର
ଭକ୍ତ ପାଇଁ ସବୁ ଅଟ ମୁକ୍ତକର । ୭ ।

ଯାତନା ଜଂଜାଳ          ବନ୍ଧନାଦି ଯେତେ
ସମସ୍ତ ହୁଅଇ ତ ଦୂର
ନିତ୍ୟାନନ୍ଦ ସୁଖ          ବିରାଜ କରଇ
କହନ୍ତି ଯେ ଶାସ୍ତ୍ରକାର
ଆହେ ଜ୍ଞାନମୟ
ଜ୍ଞାନ ଦାନେ ନାଶ କର ଭବଭୟ ।୮।

ଦେଖି ଶାସ୍ତ୍ରବାଣୀ          ପୂଜୁଛି ତୁମକୁ
ମନ-ମନ୍ଦିରେ ମୁଁ ସତତ
ତୁମରି ମହିମା          ତୁମରି ବିଭୂତି
ଚିନ୍ତାରେ ପୂରିଛି ମୋ ଚିତ୍ତ
ଆହେ ଶିଷ୍ଟପାଳ
ଏହା ସବୁ ଅଟେ ଶ୍ରେଷ୍ଠ ଭକ୍ତି ? ।୯।

ତଥାପି ସ୍ଥିରତା          ନଆସେ ମନରେ
ସର୍ବଦା ହୁଏ ଆନ୍ଦୋଳିତ
କଅଣ ଖୋଜୁଛି          ଜାଣିତ ପାରେନି
ଚେତାଇ ଦିଅହେ ଶ୍ରୀନାଥ
ଆହେ ସର୍ବଜାଣ
ମୋର ସନ୍ଦେହାଗ୍ନି କର ନିର୍ବାପନ ।୧୦।



# ଆଶକ୍ତି

( ନିର୍ଜଂଜାଳ ଜୀବନ ପାଇଁ ବିଷୟତୃଷ୍ଣା ବର୍ଜନୀୟ )

ରେ ମନ
ସଦା ତୁ ଛନ ଛନ
ମାନ ମୋର ବଚନ
ଲଭିବୁ ଯେବେ ସୁଖ ହୁମନ । ( ଘୋଷା )

ପଦ୍ମ ପତରେ ନୀର ସମ ତୁ ଚଳ ଚଳ
ଅସଲ କଥାଟି ତୋର ନୁହେଁ ସ୍ମରଣ । ୧ ।

ପତରେ ଥାଏ ନୀର ନଲାଗେ ତା ଶରୀର
ଏକଠ ରହନ୍ତି ଦୁହେଁ ଭାବଟି ଭିନ୍ନ । ୨ ।

ସେହିପରି ସଂସାରେ ରହନ୍ତୁ ସତର୍କରେ
ମଜ୍ଜି ନ ଯା ତହିଁରେ ହେ ଉଦାସୀନ । ୩ ।

ନୀର ଯେପରି ପତେ ନଲାଗେ ତାର ଗାତେ
ସଂସାର ବିଷୟରେ ନଲାଗେ ସେମନ । ୪ ।

ସଂସାର ବିଷୟରେ ଅନାସକ୍ତ ରହିଲେ
ବିଷ୍ଣୁପଦ ପ୍ରାପ୍ତିକୁ ତୁ ହେବୁ ଭାଜନ । ୫ ।

ମୋରର ନୀତିକଥା ସବୁବେଳେ ହେଜୁଥା
ଜଂଜାଳ ଛୁଇଁବନାହିଁ ହେବୁ ନିର୍ବାଣ । ୬ ।

***

# ଯୌତୁକ

( ଯୌତୁକ ପ୍ରଥା ଉଠିବା ସହଜ ନୁହେଁ । କିନ୍ତୁ ତାହାର କୁପରିଣାମ ସ୍ୱରୂପ ଯେ ବଧୂନିର୍ଯାତନା, ତାହା ଦୂର ହୋଇଯିବ । ସମାଜରେ ପରିବାର ନିଷ୍ଠା ବଦଳୁଛି । ଏହାହିଁ ସେ ଦିଗରେ ସହାୟକ ହେବ । )

ଯୌତୁକ ରାକ୍ଷସ  କବଳ କରିଛି
ସମସ୍ତଙ୍କର ମନକୁ,
ଯୌତୁକ ବିରୋଧୀ  ମତକୁ କେତେକ
ବଖାଣି ଥାନ୍ତି ମିଛକୁ । ୧ ।

ମୂଲଚୂଲ କରି  ଦର କଷନ୍ତି
ବଡ଼ ବଡ଼ଆଏ ବର,
କିଏ ବା କହିବ  ଜାଣିବ ତାଙ୍କର
ଗୋପନରେ କାରବାର । ୨ ।

କଳାଧନ କରି  ଧନୀ ହୋଇଯାଏ
ଉଲ୍ଲାସ ଲାଗଇ ତାଙ୍କୁ,
ଯୌତୁକ ସମସ୍ୟା  ଏ ଗୋଷ୍ଠୀ ଭିତରେ
ନଥିବା ଜଣା ସଭିଙ୍କୁ । ୩ ।

ମଧ୍ୟବିତ୍ତ ଘର  ନଅଣ୍ଟ ସଂସାର
ଝିଅ ପୁଣି ଏକାଧିକ,
ଝିଅ ବୋହୂ ମୁଣ୍ଡ  ଖସାଇବା ପାଇଁ
ଫନ୍ଦି କରନ୍ତି ଅନେକ । ୪ ।

ଲୋଭୀ ବରପକ୍ଷ ନବୁଝି ଅବସ୍ଥା
ଲମ୍ବା ଦାବି କରିଥାନ୍ତି
ପାରୁ ବା ନପାରୁ ପ୍ରତିଶ୍ରୁତି ଦେଇ
ବିବାହ କାମ ବଢାନ୍ତି । ୫ ।

ଯୌତୁକ ପୂରଣ ହୋଇପାରେ ନାହିଁ
ବଧୂହତ୍ୟା ହୁଏ ଫଳ,
ପୋଲିସ ମାମଲା ରୁଜୁ ହୁଏ ସିନା
ମିଳେ ନାହିଁ ପ୍ରତିକାର । ୬ ।

ଯୁଗ ବଦଳୁଛି ରୁଚି ବଦଳୁଛି
ବଧୂହତ୍ୟା ହେବ ଦୂର,
ଶାଶୁ ହତ୍ୟା ଅବା · ଶ୍ୱଶୁର ଯାତନା
ଭରିବ ଆସ୍ଥାନ ତାର । ୭ ।

ଏବର ଚଳଣି ରହିବନି ଆଉ
ନୂତନ ଧାରା ଚଳିବ,
ବୃତ୍ତିବାଡ଼ ଶୂନ୍ୟ ଯୁବକର ସର୍ବସ୍ୱ
ପରିବାର ଉପୁଜିବ । ୮ ।

ସନ୍ତାନ ଭାରିଜା ଧରି ଯୁବକଟିଏ
ପରିବାର ସମ୍ଭାଳିବ,
ବାପ, ମାଆ ଥିଲେ ବାଧ୍ୟ ହୋଇ ତାଙ୍କୁ
ନିଜପାଖେ ଆଶ୍ରା ଦେବ । ୯ ।

ବୃତ୍ତି ବାଡ଼ ଶୂନ୍ୟ ଯୁବକର ସର୍ବସ୍ୱ
ପରିବାର ମାନଙ୍କରେ,
ଶାଶୁ ଶ୍ୱଶୁରଙ୍କ ପ୍ରଭାହୀନ ହେବେ
ରହିଥିବେ ଆଶ୍ରୟରେ । ୧୦ ।

ବାସ-ବୃତ୍ତି-ଆୟ ହୀନ ଯେଣୁ ସିଏ
କ୍ଷମତାଦି ନରହିବ,
ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ମରିବରେ
ଦିବସ ବିତାଉ ଥିବ । ୧୧ ।

କାହାକୁ କୌଣସି କଥା ଅକଥାରେ
କହିବା ଦମ୍ଭ ନ ଥିବ,
ରୁଚୁ ବା ନରୁଚୁ ଲୋକ ଦେଖାଣିଆ
ହାଁଜୀ ହାଁଜୀ କରୁଥିବ । ୧୨ ।

ସେବେଳେ ବଧୂର ଯାତନା ଯନ୍ତ୍ରଣା
ଅପ୍ରାସଙ୍ଗିକ ହୋଇବ,
ନିଜ ଘରେ ଥାଇ ମାଲିକାଣୀ ହୋଇ
ଦୁଃଖ ବା କାହିଁ ଆସିବ । ୧୩ ।

ଯଉତୁକ କଥା ଉଠିବନି ସେଠି
ଉଠାଇବ ଅବା କିଏ,
ଦର୍ପ ତେଜ ହୀନ ହୋଇ ରହିଥିବେ
ଉଠାନ୍ତ ଏକଥା ଯିଏ । ୧୪ ।

ବଧୂ ନିର୍ଯ୍ୟାତନା ଅପସରି ଯିବ
ନୂତନ ରୂପ ତା ନେବ,
ଶାଶୁ ଶ୍ୱଶୁରଙ୍କ ଦୁର୍ଗତି ନାମରେ
ସମାଜେ ବଦନ ହେବ । ୧୫ ।

ଅସମ୍ମାନ ସଙ୍ଗେ କଟୂକ୍ତି କଟାକ୍ଷ
କେତେରୂପେ ବରଷିବ,
ଅଭାବ କୁଟୁମ୍ବ ହୋଇଥିଲେ ଦୁଃଖ-
ମାତ୍ରା ଅଧିକ ହୋଇବ । ୧୬ ।

ସବୁ ଅଭାବର ଜୀବନ୍ତ କାରଣ
ରୂପେ ତାଙ୍କୁ ଧରାଯିବ,
ମନମରା ହୋଇ କାଟିବେ ଜୀବନ
ଜନନ୍ତ କଷ୍ଟ ନଥିବ । ୧୭ ।

ଭୁଲ୍‌କ୍ରମେ ଯଦି ଆକଟ ଶାସନ
କଥା ପାଟିରୁ ଖସିଲା,
ଅବସ୍ଥା ତାଙ୍କର ଅସମ୍ମାନ ହେଲେ
ଦୁଃଖ କ ସୀମା ଟପିଲା । ୧୮ ।

ଶାସିତ ସେମାନେ ଶାସକ ନୁହଁନ୍ତି
ଜାଣି ରଖିବାକୁ ହେବ,
ନୋହିଲେ ମହତ ଦୁଇକଉଡ଼ା ହେବ
କାନ୍ଦ କାନ୍ଦ ଦିନ ଯିବ । ୧୯ ।

ଏପରି କୁଟୁମ୍ବ ବଢ଼ିଲେ ସମାଜେ
ବଧୂ ଦୁଃଖ କି ରହିବ,
ବଧୂ ଦୁଃଖ ଯିନା ସେଇଠି ଯେଉଁଠି
ଶାଶୂ ଶ୍ୱଶୁର ପ୍ରଭାବ । ୨୦ ।

ଶାଶୁ ଶ୍ୱଶୁରଙ୍କ ମାଲିକାନା ପଣ
ହୁଅଇ ଦୁଃଖ କାରକ,
ଯୌତୁକ ଅଶାନ୍ତି ପ୍ରକାଶିବା ପାଇଁ
ରହେନ କିଛି ବାଧକ । ୨୧ ।

ସତ ମିଛ କରି ନାନା ଦୋଷାରୋପ
ବଧୂ ବିରୋଧେ କରନ୍ତି,
ବାପ ମାଆ ଭାଇ ଭଉଣୀ ସମସ୍ତେ
ଏକମନ ହୋଇଯାନ୍ତି । ୨୨ ।

ପୁଅ ବାପୁଡ଼ାର ନଥାଏ ତାକତ
କରିବାକୁ ପ୍ରତିରୋଧ,
କାଳକ୍ରମେ ଝିଅେ ସ୍ୱାମିଙ୍କ ହୁଅଇ
ଲାଗିଯାଏ ଘୋର ଯୁଦ୍ଧ । ୨୩ ।

ଅତ୍ୟାଚାର ସହି ନ ପାରି ଶେଷରେ
ଆତ୍ମହତ୍ୟା ବଧୂ କରେ,
ଅବା ଏଇମାନେ ହତ୍ୟା କରି ତାକୁ
ନାନା ଅକଥା ପ୍ରଚାରେ । ୨୪ ।

ଯେଉଁ ଘରେ ବଧୂ ମାଲିକାଣୀ ସେଠି
ତା ପାଇଁ ସକଳ ସୁଖ,
ସବୁଘର ହେଉ ଏହିପରି ଘର
ଲୋପ ହେଉ ବଧୂ ଦୁଃଖ । ୨୫ ।

ଶାଶୁ ଶ୍ୱଶୁରଙ୍କ ଦୁଃଖ ଅଟେ ତାଙ୍କ
ନିଜ ଅବଳର ଫଳ,
ସହିପିବା ଛଡ଼ା ନାହିଁ ଏହାପାଇଁ
ଅନ୍ୟ କିଛି ପ୍ରତିକାର । ୨୭ ।



# କାମନା

( ଖାଲି ଇଚ୍ଛା କଲେ କିଛି ମିଳେ ନାହିଁ । ସେଥିପାଇଁ ଉପଯୁକ୍ତ
କର୍ମ କରିବା ଦରକାର । )

ରେ ମନ,
ଅସଲ କଥାରେ ନାହିଁ ତୋହର ଧ୍ୟାନ ।
ନବୃତ୍ତି ନପ୍ରବୃତ୍ତି ଆଶା      ବାନ୍ଧୁ ନଥାଇ ଭରସା
ଭୋଗୁ ପିନା ଖାଲି କଷଣ । (ଘୋଷା)

ରଜା ସାଜିଅଛୁ      ଇନ୍ଦ୍ରିୟ ଉପରେ
ସମ୍ବାଦ ପାଉଛୁ କ୍ଷଣେକୁ କ୍ଷଣ,
ସଂକଳ୍ପର ସୀମା      ନାହିଁଟି ତୋହର
ଘଡ଼ିକୁ-ଘଡ଼ି ତା ହୁଅଇ ଆନ । ୧ ।

ବୁଦ୍ଧି ସେନାପତି      ନାହିଁ ତା ଶକତି
ଶୁଣଇ ସେ ଖାଲି ତୋହର ଶ୍ରବଣ
ଇନ୍ଦ୍ରିୟ ଚଳନ      ପାଇଁ ସୁନପୁଣ
ଜପାପ୍ତ ତାହାକୁ ନୁହେଁ ଦର୍ଶନ । ୨ ।

ପାଦ, ପାଣି ତେଣୁ      କର୍ମେନ୍ଦ୍ରିୟ କଣ୍ଟକ
ଜ୍ଞାନେନ୍ଦ୍ରିୟେ କରନ୍ତି ବିଚରଣ
ଫଳ ଯାହା ହେଉ      କରୁଥାନ୍ତି ଖାଲି
ତୋ ପାଖେ ସଦା ସମ୍ବାଦ ପ୍ରେରଣ । ୩ ।

ସମ୍ବାଦ ପାଇଣ ସଂକଳ୍ପ କରୁଛୁ
ଫଳାଫଳ ନକରୁ ବିଶ୍ଳେଷଣ
ସୈନ୍ୟ, ସେନାପତି ନିଷ୍କର୍ମ ନିସ୍ତେଜ
କିଛି ନପାଇ ଗୋ ଭଣ୍ଡାର ଶୂନ । ୪ ।

ହତାଶ ହୋଇଣ ବିଭ୍ର ନିନ୍ଦା କରୁ
ବୁଝୁ ନାହୁଁ ଦୁଃଖ ମୂଳକାରଣ,
ଦକ୍ଷ ସେନାପତି ନଥିଲେ ଯୁଦ୍ଧରେ
ବିଜୟର ଆଶା ନୁହେଁ କି କ୍ଷୀଣ ? । ୫ ।



# ମୋକ୍ଷ

( ଚତୁର୍ଦ୍ଧି ବ୍ରହ୍ମଲାଭ ବା ମୋକ୍ଷର ପ୍ରଥମ ସୋପାନ । )

ବିପଦରେ ପଡ଼ି                ଗଜେନ୍ଦ୍ର ପରି ମୁଁ
ଡାକୁ ନାହିଁ ପ୍ରଭୁ ତୁମକୁ,
ତ୍ରୁନଆ ଦୁଅନା                ପରିଶ୍ରମ କଷ୍ଟ
**ପଡ଼ିବନି ଚଉବାହାକୁ** । ୧ ।

ନୁହେଁ ମୁଁ ଅର୍ଜୁନ                କରି ପ୍ରଶ୍ନମାନ
**ଅଥୟ କରିବି ତୁମକୁ,**
ଇହ, ପର ସୁଖ                ମାଗୁନାହିଁ ପ୍ରଭୁ
ଧରି ସୁଦାମାର ପଥକୁ । ୨ ।

ଭୋଗ ବିଳାସରେ                ବାସନା ମୋ ନାହିଁ
କାମନା କରୁନି କାହାକୁ,
ତୁମ ଦରଶନ                ଲଭିବ ଯେପରି
ଶୁଦ୍ଧ କର ମୋର ଚିତ୍ତକୁ । ୩ ।



# ନଅଣ୍ଟ

( ପ୍ରକୃତ ଅଣ୍ଟବବୋଧ ଉନ୍ନତର ଲକ୍ଷଣ । )

ନଅଣ୍ଟ ମୋହର ନାମ, ଦଶାକ ମୋ କାୟା,
ସର୍ବ ମୂର୍ଖେ ବାନ୍ଧ ବସା ବିସ୍ତାରନ୍ତି ମାୟା । ୧ ।
ସମାଜ ସଙ୍ଗେ ସୃଷ୍ଟ ମୁଁ ଆଗରୁ ନଥିଲି,
ସମାଜ ପାଇଁ ମୁଁ ଲୋଡ଼ା ବୃଦ୍ଧ ମନ ଖୋଲି । ୨ ।
ଖୋଲିଥିଲି ସମସ୍ତଙ୍କୁ ପ୍ରକୃତି ଭଣ୍ଡାର,
ସଂଗ୍ରହ ସାଇତା ବୃତ୍ତି ନଥିଲା ଗୋଚର । ୩ ।
କ୍ରମେ ଏମାନଙ୍କ ଠାରୁ ହେଲା ମୋର ଜନ୍ମ,
ବ୍ୟାପିଲି ସଂସାର ପ୍ରବେଶିଲି ସର୍ବମନ । ୪ ।
ମୂଲଆ କ କୋଟିପତି ସର୍ବେ ହେଲେ ସଖା
ମୁଁ ଛାଡ଼ିଲେ ଅବଳମ୍ବେ, ଖୋଲିଯାଏ ମୁଖା । ୫ ।
ମାତବାପା କେତେ ଲୋକ ନ ପୂଜନ୍ତି ମୋତେ,
ଅନୁନ୍ନତ କୃପଣ ସେ ବୋଲନ୍ତି ଜଗତେ । ୬ ।
ଅସାଧୁ ବେଳଗାଣିଆ କେତେକ ଅଛନ୍ତି,
ମୋ ନାମ ସେମାନେ କେବେ ଉଚ୍ଚାରି ନଥାନ୍ତି । ୭ ।
ପ୍ରକୃତ ସ୍ୱରୂପ ଧରି ଯା ପାଖରେ ଥାଏ,
ନିଷ୍ଟପୁ ଉପକାର ମୁଁ ତାର କରିଥାଏ । ୮ ।
ଯହିଁ ନଥାଏ ମୁଁ ତହିଁ ନଥାଏ ପ୍ରଗତି,
ଚୂନା ଗୁହିଁ ପିଠା କଲେ ବଢ଼େ ନା ସଂପତ୍ତି । ୯ ।

ଆୟୁ ତେଲିଁ ବ୍ୟସ୍ତ କଲେ ପ୍ରଗତି ଲକ୍ଷଣ,
ପ୍ରତ୍ୟକ୍ଷରେ ଆୟୁବୃଦ୍ଧି କରେ ତାହା ଜାଣ । ୧୦ ।
ସରକାର ମାନେ ମଧ୍ୟ ମୋର ଅନୁକୂଳ,
ମୋ ନାମେ ବଜେଟ କରି ବୋଲନ୍ତି ସଫଳ । ୧୧ ।
ପ୍ରଗତିଶୀଳ ସର୍କାର କହନ୍ତି ଜନତା,
ମୋ ପାଇଁ ମିଳା ତାଙ୍କର ଏ ଲୋକ ପ୍ରିୟତା । ୧୨ ।
ମୋର ଉପସ୍ଥିତି ସୃଷ୍ଟି କରେ ଅସନ୍ତୋଷ,
ସୃଜନଶୀଳ ପ୍ରବୃତ୍ତି ହୁଅଇ ବିକାଶ । ୧୩ ।
ଯିଏ ଯେତେ ମତେ ସ୍ମରେ ସେତେ ସେ ଉନ୍ନତ,
ସମାଜରେ ସ୍ଥିତି ତାର ହୁଅଇ ବର୍ଦ୍ଧିତ । ୧୪ ।
ଏହିପରି ସମାଜର ହିତ ମୁଁ କରଇ,
ଅପବ୍ୟବହାର ମୋର ବେଳେବେଳେ ହୋଇ । ୧୫ ।
ଜାଗା ଅଜାଗାରେ ମୋତେ କରନ୍ତି ସ୍ମରଣ,
ସୂଚଇବା ପାଇଁ ନିଜ ବଡ଼ତିଆ ପଣ । ୧୬ ।
ନିଜର ଆୟୁ ଉପରେ ଅଛଇ ସନ୍ତୋଷ,
ଚଳଣିରେ ବଡ଼ତ୍ୱର ହୁଅଇ ପ୍ରକାଶ । ୧୭ ।
ନିଜକୁ ଅଧିକ ବଡ଼ ସୂଚାଇବା ପାଇଁ
ଉଚ୍ଚାରନ୍ତି ମୋ ନାମ ଆନନ୍ଦିତ ହୋଇ । ୧୮ ।
ହଜିଗଲେ ଧନ କିମ୍ବା ଚୋର ନେଇଗଲେ,
ସଂପତ୍ତି କଣାରେ ଅବା ଝିଅ ବିବାହରେ । ୧୯ ।
ବିଳାସ ବ୍ୟସନାଦିରେ କ୍ଷୟ ହେଲେ ଧନ,
ମୋର ଉପସ୍ଥିତି ସେଠି ନୁହେଁ କଦାଚନ । ୨୦ ।

ଏ ସବୁ ଜାଗାରେ ମୋର କଲେ ଉଚ୍ଚାରଣ,
ଛଳନା ବୋଲି ତାହାକୁ ନିଶ୍ଚିତରେ ଜାଣ । ୨୧ ।

ଛଳନାରୁ ଉପକାର କିଛି ନ ମିଳଇ,
ଛଳନା ଛଳନା ହୋଇ ସଦା ରହିଥାଇ । ୨୨ ।



# ଦୀର୍ଘାୟୁ

(କର୍ମଶକ୍ତି ନଥିଲେ ଦୀର୍ଘ ଜୀବନ କାମ୍ୟ କି ?)

ଗୃହିଣି ଝପିଲେ ମଣିଷ ପଣିଆ
ସରେ ବୋଲି ଲୋକ କହେ,
ବଳଦ ଅବସ୍ଥା ଉପସ୍ଥିତ ହୁଏ
ଷାଠିଏ ଯାକେ ତା ରହେ । ୧ ।

ବଳଦ ସମାନ ଖଟେ ଅହରହ
ବାଛ ବିଚାର ନ ଥାଏ,
ସଂପତ୍ତି ଅର୍ଜନ ଗୃହ ପ୍ରକରଣ
ପୁତ୍ରକନ୍ୟା ବଢ଼ିଯାଏ । ୨ ।

ଆଶା ବାନ୍ଧିଥାଏ ବୁଢ଼ା ହୋଇଗଲେ
ଶ୍ରମୁ ଅବ୍ୟାହତି ନେଇ,
ଆରାମ କରିବ ସୁଖେ ଦିନ ଯିବ
ବିଭୁନାମ ଗାଇ ଗାଇ । ୩ ।

ଷାଠିଏ ଝପିଲେ କର୍ମ କୁଶଳତା
ନଥାଏ ତ ଆଉ ତାର,
କୁକୁର ପରାୟେ ଦାଣ୍ଡ ଦରଜାରେ
ପଡ଼ିବାଟି ହୁଏ ସାର । ୪ ।

ଘରଜଗା କାମ ବନମଧ୍ୟେ ମିଳେ
ଖାଇବା ପାଇଁ ଆହାର,
ଅକାରଣେ କେବେ କେବେ ଶୁଭେ ମାତ୍ର
ଚଢା ଗଳା ଉଚ୍ଚସ୍ୱର । ୫ ।

ନ ଘେନନ୍ତି କଥା ଓଲଟି ଗଞ୍ଜଣା
ପାଇ ବୁଢ଼ା ମନ ମାରେ,
ସୁଖ ଆଶା ତାର ସ୍ୱପନ ହୁଅଇ
ବନ୍ଧୁନାମ ରହେ ଦୂରେ । ୬ ।

ଅଶୀତି ବୟସ ପରିଯନ୍ତେ ବୁଢ଼ା
ବଞ୍ଚେ କୁକୁର ପରାୟେ,
ଅଣୀ ଝପିଗଲେ ପେଚକ ଅବସ୍ଥା
ଆସି ଉପସ୍ଥିତ ହୁଏ । ୭ ।

ହସ୍ତ ପଦତାର ଶିଥିଳ ହୁଅଇ
ଉଠିବସି ନ ପାରଇ
ଘର କଣଟିରେ ପଡ଼ିରହେ ବୁଢ଼ା
ସମସ୍ତ ଅବଜ୍ଞା ସହି । ୮ ।

ଶରୀର ଯନ୍ତ୍ରଣା ଅବଜ୍ଞାର ଜ୍ୱାଳା
ବୁଢାକୁ କରେ ଅସ୍ଥିର,
କହିବ କାହାକୁ ଶୁଣିବ କିଏ ସେ
ଗରଗର ହେବା ସାର । ୯ ।

ସ୍ନେହ ଶରଧା ତ ନ ରହେ ତା ପ୍ରତି
ଓଲଟି ଖର ବଚନ,
ଅଶୁଭ ହୁଅଇ ବୁଢ଼ାକୁ ଦେଖିଲେ
ପେଚକ ଦର୍ଶନ ସମ । ୧୦ ।

ମଣିଷ କାଳର ଦର୍ପ, ତେଜ, ଦମ୍ଭ
କୁଆଡେ ଯାଏରେ ଭାଇ,
ଏଇଥି ପାଇଁକି ଦୀର୍ଘାୟୁ ଜୀବନ
ଝୁରୀ ହୋଇ ଦ୍ୟନ୍ତି ସାଇଁ ? । ୧୧ ।

# ନିରପେକ୍ଷ

(ମନ୍ଦିର ଯାଇଁ ଠାକୁର ଦର୍ଶନ କରିବା ସମସ୍ତଙ୍କର କାମ୍ୟ । ମାତ୍ର ସେଥିପାଇଁ ସୁବିଧା ସୁଯୋଗ ସମଭାବରେ ସମସ୍ତଙ୍କୁ ମିଳେ କି ?)

ବିଭିନ୍ନ ଜାଗାରେ ବିଭିନ୍ନ ମନ୍ଦିରେ
ବିଭିନ୍ନ ରୂପରେ ପୁଣି,
ବିଭିନ୍ନ ନାମରେ ବିରାଜିତ ଅଛ
ଭକ୍ତର ମନକୁ ଜାଣି । ୧ ।

ବିଭିନ୍ନ ଆସ୍ଥାନେ ବିଭିନ୍ନ କ୍ଷମତା
ଧାରଣ କରିଣ ଅଛ,
କାମନାନୁସାରେ ଆରାଧିତ ହୋଇ
ଅଭୀଷ୍ଟ ପୂର୍ଣ୍ଣ କରୁଛ । ୨ ।

ଦୂର ଦୂରାନ୍ତରୁ ଭକତ ପ୍ରବରେ
ଧାଆନ୍ତି ଦର୍ଶନ ପାଇଁ,
ସମୟ, ସୁଯୋଗ ଅର୍ଥବଳ ଆଦି
ଖଞ୍ଜାଇ ଦେଇଛ ସାଇଁ । ୩ ।

ଦରଶନ ପୁଣି ପୂଜା ଅରଚନା
ଯାକ ଯମକେ କରନ୍ତି,
ପଣ୍ଡା ପଡିଆରୀ ଦାନ ଦକ୍ଷିଣାଦି
ପାଇ କୃତାର୍ଥ ହୁଅନ୍ତି । ୪ ।

ଧନ ସମ୍ପଦାନ୍ଧ ସଂସାର ସୁଖରେ
ହୋଇଥାନ୍ତି ଜଡସଡ,
ସେସବୁ ମାନଙ୍କର ଦର୍ଶନ ଆଳରେ
ମନ୍ଦରେ ଜମଇ ଭିଡ଼ । ୫ ।

ତୁମ ଦରଶନ ସାଙ୍ଗେ ପ୍ରିୟାପ୍ରୀତି
ଦର୍ଶନ ବି ଲଭ ହୁଏ,
ଠାକୁର ଦର୍ଶନ କଦଳୀ ବେପାର
ଏକ ସଙ୍ଗେ ଚାଲିଥାଏ । ୬ ।

ଗରିବ ବାପୁଡ଼ା ଜୀର୍ଣ୍ଣ କୁଡ଼ିଆରେ
ପଡ଼ ହୁଏ ଛଟ ପଟ,
ଅନ୍ନବସ୍ତ୍ର ମାତ୍ର ଯୋଗାଡ଼ କରିବା
ତା ପକ୍ଷରେ ହୁଏ କଷ୍ଟ । ୭ ।

ରୋଗ ହେଲେ ତାକୁ ଔଷଧ ନ ମିଳେ
ରୋଗର ଯନ୍ତ୍ରଣା ଭୋଗେ,
ଗରିବର କଥା କିଏ ସେ ଶୁଣିବ
କହିବ ସେ କାହା ଆଗେ । ୮ ।

ତୁମେ ତ ରହିଛ ଦୂରେ ବହୁଦୂରେ
ଗମ୍ଭୀର ଭିତରେ ବସି,
ବଡ଼ ବଡ଼ଆଏ ଘେରି ରହିଛନ୍ତି
ତୁମକୁ ଲାଗଇ ଖୁସି । ୯ ।

ବଡ଼ ବଡ଼ଆଙ୍କ ଦାମିକା ପୂଜାରେ
ହୋଇଥାଅ ତୁମେ ଭୋଳ,
ଗରିବକୁ ଦେଖା ଦେବାକୁ ହେ ପଭ
ତୁମକୁ ନ ଥାଏ ବେଳ । ୧୦ ।

ତୁମ ନିକଟକୁ ଏତେ ଦୂରବାଟ
ଯିବାପାଇଁ ଅର୍ଥ ଲୋଡ଼ା,
ଅର୍ଥ ଅଭାବରୁ ତୁମ ଦରଶନୁ
ବଞ୍ଚିତ ହୁଏ ବାପୁଡ଼ା । ୧୧ ।

ବାରମ୍ବାର ଯାହା ସଙ୍ଗରେ ସାକ୍ଷାତ
ନୁହେଁ କି ସେ ତୁମ ପ୍ରିୟ,
ତୁମ ଅନୁଗ୍ରହ- ଗଣ୍ଡି ତାହା ପାଇଁ
କେବେ ହୁଏ ନାହିଁ କ୍ଷୟ । ୧୨ ।

ପେଟ ପାଟି କଟା ସଙ୍କେତ ଅର୍ଥରେ
ତୁମ ଦରଶନ ପାଇଁ,
ଅକାଳେ ସକାଳେ ଗରିବ ଗଲେ
ତୁମେ ତ ଅନାଥ ନାହିଁ । ୧୩ ।

ପଣ୍ଡା ପଡ଼ିଆରୀ ଦ୍ୱାରପାଳ ଆଦି
ଯେତେକ ମନ୍ଦରେ ଥାନ୍ତି,
ଦନେ କାଳେ ଦେଖା ନାହିଁ ବାପୁଡ଼ାର
କଣ୍ଠ ଘଉଡ଼ାଇ ଦିଅନ୍ତି । ୧୪ ।

ଧନୀ ପରି ସେତ ତୁମ ପ୍ରାସାଦରେ
ଆଦର ଲଭଇ ନାହିଁ,
ଅନେକ ସମୟେ ତୁମ ଦରଶନ
ଅସମ୍ଭବ ହୋଇଥାଇ । ୧୫ ।

ଭେଟି ପୁଣି ତାର ଅତି ଦୟନୀୟ
ତୁମକୁ ଲାଗଇ ଘୃଣା,
ସୁହୃଷ୍ଟି ବଦନେ କର୍କଶ କଟାକ୍ଷ
ଲଭିଥାଏ ନିଷ୍ଠୁରଣା । ୧୬ ।

ମନ୍ଦିର ପ୍ରାଙ୍ଗଣ ଧନୀ ଭୋଗୀଙ୍କର
ହୋଇଥାଏ ଆଡ଼ମ୍ବର,
ଗରିବ ସେଠାକୁ ଯାଇ ତ ପାରେନା
ଗଲେ ହୁଅଇ ନିଷ୍ଫଳ । ୧୭ ।

ତୁମ ଅନୁଗ୍ରହେ ଧନିକର ଧନ
ଲାଗିଥାଏ ବଢ଼ିବାରେ,
ଗରିବ ବାପୁଡ଼ା ନିରାଶ୍ରୟ ହୋଇ
କପାଳରେ କର ମାରେ । ୧୮ ।

ନିୟମ କରିଛ ତୁମ ଦରଶନ<br>
ନେତା ସୁଖୀ ହେବାପାଇଁ,<br>
ଦରଶନ ପାଇଁ ସୁବିଧା ସୁଯୋଗ<br>
ଗରିବଙ୍କୁ ଦିଅ ନାହିଁ । ୧୯ ।

ପରୋକ୍ଷରେ ସୁଖ ମନା କରିଅଛ<br>
ଗରିବ ପାଇଁ କି ବିନା,<br>
ଏଇଥି ପାଇଁ କି ଫର ଫର ଉଡ଼େ<br>
ନିରପେକ୍ଷତାର ବାନା ? । ୨୦ ।

# ଅଭିମାନ

( ଅଭିମାନ ଶୂନ୍ୟ ନ ହେଲେ ମାୟା କବଳରୁ ଯାଇ ନାହିଁ । )

'ମୁଁ କରଇ' 'ମୋର ଅଛି'
ଏହି ଭାବରେ ମଜ୍ଜି,
ସ୍ୱରୂପ ଭୁଲି ଭ୍ରମେ ଜୀବ
ପାରେନା ତା ହେଜ । ୧ ।
ଶରୀର ଭିତରେ ଥାଏ 'ମୁଁ'
ଶରୀରରୁ ଭିନ୍ନ,
ଶରୀର ମଲେ 'ମୁଁ' ମରେନା
ବୁଝ ଦେଇ ମନ । ୨ ।
ଜଡ ଶରୀର 'ମୁଁ' ଥିବାରୁ
କରେ କାମ ଧାମ,
'ମୁଁ' ଛାଡ଼ିଲେ ଶରୀର ପଡା
ହୁଅଇ ଅକାମ । ୩ ।
ଶରୀର କରେ 'ମୁଁ' ସାକ୍ଷୀ
କାହିଁ ନଦିଏ ହାତ,
'ମୁଁ କରୁଛି' କହିବା ତେଣୁ
ଅଟେ ପୂର୍ବ ଭ୍ରାନ୍ତ । ୪ ।

ଉଦାସୀନ ହୋଇ ରହେ 'ମୁଁ'
ବୁଦ୍ଧି ମାଲିକ,
'ମୋର' ବୋଲି ଯାହା କହୁଛ
ସଂପୂର୍ଣ୍ଣ ଅଳିକ । ୫ ।
ଶରୀର ନାଶେ ଅନ୍ୟ 'ଶରୀରେ
ରହେ 'ମୁଁ' ଯାଇଁ,
ଅକ୍ଷୟ 'ମୁଁ' ଦେହରୁ ଦେହ
ଗତି କରୁଥାଇଁ । ୬ ।
ଭଗବାନଙ୍କର ଅଂଶ 'ମୁଁ' ମାୟାରୁ
ହୋଇଛି ଜୀବ,
ମାୟା ହଟିଲେ ଜୀବତ୍ୱ ଶେଷ
ସ୍ୱରୂପ ଲଭ । ୭ ।
'ମୁଁ, ମୋର' ଅଜ୍ଞାନ ଭାବ
ଜୀବକୁ କରେ ବନ୍ଧ,
ଜ୍ଞାନ ଲଭେ ତୁଟେ ଭ୍ରମ
ସାଧନା ହୁଏ ସିଦ୍ଧ । ୮ ।
ନୋହିଲେ ଜୀବ ମାୟାରେ ପଡ଼ି
ହୁଅଇ ଧାନ୍ଦି,
ଜନ୍ମରୁ ଜନ୍ମ ଦୁଃଖ ଭୋଗିବା
କଥାଟି ଖାଣ୍ଟି । ୯ ।



# ଧର୍ମ

( ସମାଜରେ ଧର୍ମନୀତ ଠିକ୍‌ଭାବେ କେତେ ଲୋକ ପାଳନ କରନ୍ତି ? )

ସମାଜ ଦୁର୍ଗତି ଦେଖି ଥୋକେ ଲୋକ
ଦ୍ୱାର ଛାଡ଼ୁଛନ୍ତି କହି,
ଅଧର୍ମ ବ୍ୟାପିଲା ପ୍ରଭୁ ରକ୍ଷାକର
ନୋହିଲେ ଭାସିଲା ମହୀ । ୧ ।

ସମାଜରେ କିଏ ଅଟଇ ଧାର୍ମିକ
ଜାଣିବ ପାରିଲି ନାହିଁ,
ନିଜକୁ ନିଜେ ମୁଁ ସନ୍ଦେହ କରୁଛି
ଧର୍ମ କି ପାଳୁଛି ମୁହିଁ ? । ୨ ।

ଧର୍ମ ଖାଲି ନୁହେଁ ଈଶ୍ୱର ବିଶ୍ୱାସ
ପୂଜା ଭଜନର କଥା,
ନୁହେଁ ଧର୍ମ ଛାଡ଼ା ସମାଜ ଅହିତ
ସାଧନ କରେ ଯେ ପ୍ରଥା । ୩ ।

ବ୍ୟକ୍ତିର ମଙ୍ଗଳେ ସମାଜ ମଙ୍ଗଳେ
ଉଦ୍ଦିଷ୍ଟ ଯେ ପରମ୍ପରା,
ଚରିତ୍ର ଗଠନ ପାଇଁ ଯେତେ ନୀତି
ଅଟଇ ଧର୍ମର ଧାରା । ୪ ।

ଈଶ୍ୱର ବିଶ୍ୱାସ ଛଡ଼ା ଏହିମତ
ଯେତେ ଅଛି ଧର୍ମ ମାର୍ଗ,
ଠିକ୍ ଠିକ୍ ଭାବେ କେହି କି ସମାଜେ
ପାଳନ କରୁ ଅଛନ୍ତି ? । ୫ ।

ଅନ୍ୟାୟରେ ଧନ ଅର୍ଜିଲେ ଯେପରି
ଦାନ ହୁଏ ଧର୍ମ ମାର୍ଗ,
ଅନ୍ୟ ଜନ୍ମର ଅପାଳନେ ମଧ୍ୟ
ଘଟିଥାଏ ସମ୍ଭ୍ରାନ୍ତି । ୬ ।

ଟାଣକଥା କହି କାହାର ମନରେ
ଦେଲ ଯେବେ ତୁମେ କଷ୍ଟ,
ମିଛ କଥା କହି ଅନ୍ୟକୁ ଭୁଲାଇ
କାଟିଲ ଯେବେ ଅରିଷ୍ଟ । ୭ ।

ପରଧନ ହରି ନିଜେ ସୁଖ ଭୋଗି
ଦେଲ ଯେବେ ତାକୁ କଷ୍ଟ,
ପରନିନ୍ଦା ପୁଣି ନିଷ୍ଠୁରତା କରି
ହେଉଥାଅ ଯେବେ ତୁଷ୍ଟ । ୮ ।

ଗୁରୁ, ଗୁରୁଜନେ ଅସମ୍ମାନ ପୁଣି
ଲଘୁଜନେ ନାହିଁ ସ୍ନେହ,
ପରମ୍ପରା ଭାଙ୍ଗି ଶାସ୍ତ୍ରକୁ ଉପେକ୍ଷି
ବଢ଼ୁଥାଅ ଯେବେ କୋହ । ୯ ।

ଶୌଚ ସଦାଚାର ବିହୀନ ଜୀବନ
କାଟୁଥାଅ ଯେବେ କୁହ,
ଅନ୍ୟାୟରେ ଧନ ଅରଜୁଛି ଯିଏ
ତା ସଙ୍ଗେ ସମ କି ନୁହଁ ? । ୧୦ ।

ସମାଜର କ୍ଷତି କରଇ ନାହିଁ କି
ଏହି ଅପକର୍ମମାନ,
ସେନେହ ସୌହାର୍ଦ୍ଦ୍ୟ ପର ଉପକାର
ସମାଜରେ ହୁଏ ସ୍ୱପ୍ନ । ୧୧ ।

ଅଧର୍ମ କରୁଛୁ ବୋଲି ଯେବେ ଆମେ
ତାହାକୁ କହିବା 'ସ୍ୱୈର',
ସମାଜରେ କେହି ଏ ଦୃଶ୍ୟ ପଦରୁ
ପାଇବେ ନାହିଁ ଉଦ୍ଧାର । ୧୨ ।

ଲାଞ୍ଚ ଯିଏ ନେଲା ଅଧର୍ମ କରିଲା
ଲାଞ୍ଚ ଯିଏ ଦେଲା ପୁଣି,
ଅଧର୍ମ କାମରେ ସମଭାବେ ଭାଗୀ
ହୋଇବ ନାହିଁ କି ସେହି ? । ୧୩ ।

କେହି ବଡ କେହି ସାନ ହେବ ପିନା
ସମସ୍ତେ ଅଟନ୍ତି ସ୍ୱୈର,
ଅଧର୍ମ ବଳେ ଯେ ପ୍ରକୃତରେ କେହି
ଗୃହାନ୍ତ୍ରନ ପ୍ରତିକାର । ୧୪ ।

ଧର୍ମନିଷ୍ଠ ବୁଦ୍ଧି ଧର୍ମ ପାଳନରେ
ସମସ୍ତେ ନୋହିଲେ ଦୃଢ଼,
ସମାଜୁ ଦୁର୍ଗତି ହଟିବା ସହଜ
ନୁହେଁ ଏ ଦୃଢ଼ ପ୍ରଜ୍ଞାତ । ୧୫ ।

ଦୁର୍ଗତି ଯେପରି ରହିଛି ସେପରି
ରହିଥିବ ସଦାକାଳେ,
ଦୁର୍ଗତି ବଶେ ଯେ ଚିତ୍କାର କେବଳ
ଶୁଭୁଥିବ ବେଳେ ବେଳେ । ୧୬ ।



# ସାଧନା

( ମନକୁ ଭଗବଦ୍-ମୁଖୀ କଲେ ମନୁଷ୍ୟ ସୁଖୀ ହେବ । ମାତ୍ର ତାହା କି ସହଜ ?
ବିନା ସାଧନାରେ ସିଦ୍ଧି କଅଣ ମିଳେ ?)

ମନ ସମର୍ପିଲେ ତୁମକୁ ହେ ପ୍ରଭୁ
ସବୁ ଦୁଃଖ ହୁଏ ଦୂର,
ଇହକାଳେ ଶାନ୍ତି ଇହପରେ ବାସ
ମିଳଇ ତୁମ ପାଖରେ । ୧ ।

ଶୁଣିଲେ କଥାଟି ସହଜ ଲାଗଇ
ପାଳନେ କି ତାହା ହୁଏ,
ସବୁ ଛାଡ଼ଛୁଡ଼ି ତୁମ ପଦେ ପ୍ରଭୁ
ମନକୁ କିଏ ଲଗାଏ ? । ୨ ।

ଦେଇଛ ଯାହାକୁ ସୁଖ ଓ ସମ୍ପଦ
ତହିଁରେ ସେ ହୁଏ ଭୋଳ,
ତୁମ କଥା ଆଉ ମନେ ଆଣିବାକୁ
ନଥାଏ ତାହାର ବେଳ । ୩ ।

ଦୁଃଖ ଅଭାବରେ ରଖିଛ ଯାହାକୁ
ଦୁଃଖେ ହୋଇ ସଦା ଘାଣ୍ଟି,
ଦୁଃଖେ ମ୍ରିୟମାଣ ହୋଇ ସେ ତୁମକୁ
ଭୁଲେ, ଏ କଥାଟି ଖାଣ୍ଟି । ୪ ।

ସୁଖୀ ଦୁଃଖୀଙ୍କର    ହୁଅଇ ହେ ପ୍ରଭୁ
ସମାନ ଏଇ ଅବସ୍ଥା,
ମନ ଅରପିଣ    ଇହ-ପର ସୁଖ
ପାଇବା ନିୟମ ବୃଥା । ୫ ।

ସଂସାର ବିରାଗୀ    ସନ୍ୟାସୀ ପକ୍ଷରେ
ସମ୍ଭବ ବା ହୁଏ ଏହା,
ସଂସାରୀ ପକ୍ଷରେ    ଅକାମୀ ଏ ମାତ୍ର
ନ ଉଠି ରହୁଛି ଯାହା । ୬ ।

ତଥାପି ଭରସା    ରହୁଛି ଏତିକି
ତୁମ ଅନୁଗ୍ରହ ହେଲେ,
ଅସାଧ୍ୟ ମନ ବି    ଅଚଞ୍ଚଳ ହୋଇ
ତୁମ ପଦେ ଲାଗେ ଭଲେ । ୭ ।

ତୁମ ଅନୁରାଗ    ପାଇଁ ଶାସ୍ତ୍ର କହେ
କାମନା ନ ରଖି କିଛି,
ସ୍ୱଧର୍ମ ପାଳିଲେ    ଅନୁଗ୍ରହ ଲଭେ
କଷ୍ଟ ନ ରହିବ କିଛି । ୮ ।

ନିଷ୍କାମ କରମ    ସାଧନା କରିବା
ନୁହେଁ ସହଜ ବ୍ୟାପାର,
କିମ୍ପାଇଁ ଏପରି    ଅସାଧ୍ୟ ନିୟମ
ଗଢ଼ିଛ ହେ ପରାତ୍ପର ? । ୯ ।

ଭଲ, ମନ୍ଦ, ଧନୀ,    ଗରିବ ଇତ୍ୟାଦି
ଅଶେଷ ଭେଦରେ ଭରା,
ଅତି ବିଷମ ଏ    ସମାଜ ଅଟଇ
ଜଟିଳ ଜୀବନ ଧାରା । ୧୦ ।

ଯାହା ଭଲ ତାହା    ପାଇବା ପାଇଁକି
ସିଦ୍ଧି ସାଧନାଦି ଲୋଡ଼ା,
ତା ପାଇଁ ଚିନ୍ତିଛ    ଯେତେ ଯେତେ ମାତ୍ର
ଅତି ପରପଞ୍ଚ ପରା । ୧୧ ।

ଶାସ୍ତରେ ସେ ସବୁ  ରହିଛି କେବଳ
ପାଳୁତ ନାହାନ୍ତି କେହି,
ଅକାରଣ ଦୋଷ-  ମନ୍ୟତା ବଢୁଛି
ବୁଝ ହେ ଜଗତ ସାଇଁ । ୧୨ ।

ଯେତେ ଯେତେ ଭେଦ  ରହିଛି ସମାଜେ
ସବୁ ଗଲେ ଦୂର ହୋଇ,
ସିଦ୍ଧି ସାଧନାର  ଲୋଡ଼ା ନ ହୋଇବ
ଶାସ୍ତ୍ର ମାତ୍ର କାହିଁ ପାଇଁ ? । ୧୩ ।

ଏ ଧରା ବାସୀଙ୍କ  ପାଇଁ ଯେବେ ପ୍ରଭୁ
ରହିଛି ଦୟା ତୁମର,
ଦୟା ବହିତାର  ଜୀବନ ଧାରାକୁ
ସରଳ ସୁନ୍ଦର କର । ୧୪ ।

ନିୟମ ଆବଦ୍ଧ  ଜଟିଳ ଜୀବନେ
ସିଦ୍ଧି ସାଧନା ତ ନାହିଁ,
ତଳକୁ ତଳକୁ  ଯାଉଥିବ ସିଏ
ତୁମେ ରହିଥିବ ଚାହିଁ । ୧୫ ।



# ଆତ୍ମଜ୍ଞାନ

( ଜୀବ ଓ ବ୍ରହ୍ମ ଭିତରେ ମାୟା ପ୍ରାଚୀର ସଦୃଶ । ଜ୍ଞାନ ଉଦୟ ହେଲେ ତାହା ଅପସରି ଯାଏ ଓ ଜୀବ ଓ ବ୍ରହ୍ମର ଏକତ୍ୱ ପ୍ରତିଷ୍ଠିତ ହୁଏ । )

ପ୍ରଭୁ ପ୍ରଭୁ ବୋଲି ଡାକୁଛି ସତତ
ଡାକତ ପହଞ୍ଚୁ ନାହିଁ,
ଦୂରରେ ଅଛ କି ପାଖରେ ରହିଛ
ଜାଣିତ ପାରଇ ନାହିଁ । ୧ ।

ଅନ୍ଧପରି ଖାଲି ଉଣ୍ଡାଳ ହେଉଛି
ଧରିତ ପାରଇ ନାହିଁ,
ଅନ୍ଧତା ମୋ ପ୍ରଭୁ ଦୂର କରି ଦିଅ
ତୁମକୁ ଦେଖିବା ପାଇଁ । ୨ ।

ତୁମେ ତ ରହିଛ ମୁଁ ତ ରହିଅଛି
ଦେଖିବାରେ କଣ୍ଟକଣା,
ଜାରି କରିଅଛ କି ଲାଭ ଆଶାରେ
ତୁମକୁ କେବଳ ଜଣା । ୩ ।

କଡ଼ା ଜଗୁଆଳ ରଖିଛ ଦୁଆରେ
ମୋ କଥା ଶୁଣଇ ନାହିଁ,
କେତେ ଲୋକଙ୍କୁ ସେ ଛାଡ଼ିଦିଏ ବାଟ
ଆଖିରେ ମୁଁ ଦେଖୁଥାଇଁ । ୪ ।

କଏ ଟିବ କଏ      ନଯିବ ଟେ କଥା
ବସ୍ତୁର ସେ କରେ ନାହିଁ,
ତୁମ ଅନୁମତି      ପାଇଲ ମାତ୍ରକେ
ବାଟ ସେ ଛୁଡ଼ି ଦଅଇ । ୫ ।

ଯିଏ ଯାଉଛନ୍ତି      ଏ ଦୁଃଖ ସଂସାରେ
ଆଉ ତ ଫେରୁ ନାହାନ୍ତି,
ଚିର ସୁଖେ ମଜ୍ଜି      ତୁମ ପ୍ରାସାଦରେ
ଚିରଦିନ ରହୁଛନ୍ତି । ୬ ।

ସେ ସୁଖ ଲୋଭରେ      ଧାଉଁଛୁ ତୁମକୁ
ଦର୍ଶନ କରିବା ପାଇଁ,
ମୋର ନିବେଦନ      ଶୁଣୁଛ ନ ହୁଏ
କମ୍ପାଇଁ କହ ହେ ସାଇଁ । ୭ ।

ଜନ୍ମ ଜନ୍ମାନ୍ତର      ପାପ ଅବା ମୋର
ହୋଇ ନାହିଁ ଏବେ କ୍ଷୟ,
କପଟ ଜାଣିବ      କଅଣ କରିବ
ବତାଇ କର ଅଭୟ । ୮ ।

ତୁମ ସାଙ୍ଗେ ଭଲ      ଜଣା ଶୁଣା ଥିବା
ଜାଣିଲେ ସେ ଜଗୁଆଳି,
ଆଜ୍ଞେଇ ହୋଇତ      ବାଟ ଛୁଡ଼ଦିଏ
କରେ ନାହିଁ କିଛି ଅଳି । ୯ ।

ତୁମ ସାଙ୍ଗେ ମୋର      ପରିଚୟ କଥା!
ବୁଝେ ନାହିଁ ସିଏ ଜମା,
ଶବ କାଳେ ନାହିଁ      ଶୁଣା ଶୁଣି କଥା
କରୁଅଛୁ ମୁଁ ତର୍ଜମା । ୧୦ ।

ଏତେ ଅଜୁଆରେ      ଲଭ ନାହିଁ ପ୍ରଭୁ
ଉଠୁ ଜଗୁଆଳି ପ୍ରଥା,
ତୁମ ମୋ ଭିତରେ      ଭେଦ ନ ରହିବ
ଆସିବ ପୂର୍ଣ୍ଣ ଏକତା । ୧୧ ।

ସମସ୍ତେ ଗୃହାଲେ ବେଳ ଅବେଳରେ
ତୁମ ଦରଶନ ପାଇଁ,
ବିଶୃଙ୍ଖଳା ଟିକେ ହୋଇବ ନିଶ୍ଚୟ
ବ୍ୟସ୍ତ ନହୁଅ ହେ ସାଇଁ । ୧୨ ।

ତୁମର ସାମାନ୍ୟ କଷ୍ଟରେ ଆମର
ଏତେ କଷ୍ଟ ହେବ ଦୂର,
ଜନର ସୁବିଧା ବିନାମନ୍ୟୁ ପ୍ରଭୁ
ଗରେ ସୁବିଧା କର । ୧୩ ।

# ଅବତାର

( ସମାଜରେ ପାରିବାର ଲୋକମାନେ ନିଜେ ସୁଖ ସମ୍ଭୋଗରେ ରହୁଛନ୍ତି । ମାତ୍ର ଦୁର୍ବଳ ଲୋକମାନଙ୍କ ଦୁଃଖ ପ୍ରତି ନଜର ଦେଉନାହାନ୍ତି । ଏହା ଅଧର୍ମ । )

ମାନବକତାର ସୁବିକାଶ ପାଇଁ
ଗ୍ରନ୍ଥେ ଯେତେ ନୀତି ବାଣୀ,
ଧର୍ମ ଶାସ୍ତ୍ର ଦୃଷ୍ଟା ଆବୋରି ରହିଛି
କି ଜାଣେ କେ ତାହା ପୁଣି ।୧।

ଜାଣିଲେ କି ଲାଭ କରମରେ ଯଦି
ନ ହେଲା ପ୍ରତିଫଳିତ,
ପୋଥି ବାଇଗଣ ପରି ଏହି ଜ୍ଞାନ
ନୋହିବ କି ବିବେଚିତ ? ।୨।

ଅଜାଣି ଅଜ୍ଞାନ ଲୋକ ଯେବେ ମନ୍ଦ
କରମ କଲରେ ହଇ,
ସୁପଥକୁ ତାକୁ ଆଣିବା ସହଜ
ଶୁଭ ପରାମର୍ଶ ଦେଇ ।୩।

ପଣ୍ଡିତ ପାଠୁଆ କ୍ଷମା ବୋଲିଇବା
ଲୋକ ଯେବେ ତାହା କରେ,
କି ବାଟ ରହିଛି ନିବର୍ତ୍ତାଇବାକୁ
ଭାବିଛ କି ମନେ ଥରେ ? ।୪।

ସେହିମାନେ ଧନୀ  ସେହିମାନେ ମାନୀ
ପଦାଧିକାରୀ ସେମାନେ,
କ୍ଷମତା, ପ୍ରଭାବ  ତାଙ୍କ ପାଖେଥିବ
ବସନ୍ତ ଗୁଳକାସନେ । ୫ ।
ରକ୍ଷକ ଭକ୍ଷକ  ହେଲେ ଗତି ଯାହା
ହୁଏ ତାହା ସର୍ବେ ଜଣା,
ନିସ୍ସହ ଜନତା  ଦୁଃଖେ ସହିଥାନ୍ତି
ଭାବ ଭାଗ୍ୟ ବୁଝାମଣା ! ୬ ।
ସମାଜର ପ୍ରତି  ବିଭାଗରେ ଏହି
ପାଠୁଆଁଙ୍କ ପ୍ରତିପତ୍ତି,
ଅର୍ନତକୁ ମନ୍ତ  ବଖାଣି ଦେବାରେ
ଅଛି ତାଙ୍କ କରାମର୍ତ୍ତି ୭ ।
ସର୍କାରୀ ଦପ୍ତର  ଦୋକାନ ବଜାର
ମଠ ମନ୍ଦିରାଦି ଯେତେ,
ପ୍ରକାର ପ୍ରକାର  ଦୁର୍ନୀତିରେ ଭରା
ବଖାଣିବ ତାହା କେତେ ? । ୮ ।
ସଉକରେ କେହି  ଦୁର୍ନୀତି କରେନା
କରେ ସ୍ୱାର୍ଥ ସିଦ୍ଧି ପାଇଁ,
ଲୋଭଗ୍ରସ୍ତ ହୋଇ  ଧନ ଆହରଣେ
ମନକୁ ଦିଏ ମଜାଇ । ୯ ।
ଧନର ପିପାସା  ମେଣ୍ଟେ ନାହିଁ କେବେ
ଯେତେ ଅରଜିଲେ ଧନ,
ଧନମଦେ ମଜ୍ଜି  ଅନ୍ୟାୟ ଅଧର୍ମ
ଜାଣି ନ ପାରେ ତା ମନ । ୧୦ ।
ଧନ ସଙ୍ଗେ ଯୋଡ଼ା  ଯେତେ ଅପକର୍ମ
କରେ ସିଏ ଅନାୟାସେ,
ନିରଙ୍କୁଶ ଭାବ  ନିରଙ୍କୁଶ ଗତି
ରୋକିବ ତାକୁ କିଏ ସେ ? । ୧୧ ।

ଧର୍ମ ଗୁରୁମାନଙ୍କର          ଅପକର୍ମ ଧାରା
ଚାଲେ ସମାଜେ ଏପରି,
ଶୋଷିତ, ପୀଡ଼ିତ          ଅନ୍ନବସ୍ତ୍ର ହୀନ
ଭାବେ ଏ ଭାଗ୍ୟର ଡୋରି । ୧୨ ।

ଆଶ୍ୱାସନା ବାଣୀ          ଶୁଣାନ୍ତି ଏମାନେ
ସବୁ ଦୁଃଖ ହେବ ଦୂର,
ଦୁଃଖ ଦୂର ହେଉ          ଅଥବା ନ ହେଉ
ଯୋଜନା ହୁଏ ପ୍ରଚୁର । ୧୩ ।

ଯୋଜନା ନାମରେ          ପ୍ରବଞ୍ଚନା ଚାଲି-
ଅଛି ଆମ ସମାଜରେ,
ଯୋଜନାର ଫଳ          କିଏ ସେ ଭୋଗୁଛି
ଭାବିଛ କି ହୃଦୟରେ ? । ୧୪ ।

ଅନ୍ନ-ବସ୍ତ୍ର-ବାସ-          ଶିକ୍ଷା ହୀନ ହୋଇ
ରହେ କୋଟି କୋଟି ଲୋକ,
ମୁଷ୍ଟିମେୟ ଲୋକ          ଯୋଜନାର ଫଳ
ଭୋଗି ବୋଲନ୍ତି ମାଲିକ । ୧୫ ।

ସମାଜୁ ଏ ବ୍ୟାଧି          ଘୁଞ୍ଚିବ କିପରି
କେହି କି ଭାବଇ କେବେ,
ଧର୍ମ ଚେତନାର          ବିକାଶ ନ ହେଲେ
ଏ ଦୁଃଖ ନ ଘୁଞ୍ଚେ ଲବେ । ୧୬ ।

ସାଧୁଭାବ ବହି          ପରିବାର ଲୋକେ
ସ୍ୱାର୍ଥ ପରିହାର କରି,
ଧରମ ମାର୍ଗରେ          କରମ କରିଲେ
ସମାଜେ ରଜିବ ଶିରୀ । ୧୭ ।

ଏକ ଈଶ୍ୱରଙ୍କ          ସନ୍ତାନ ସରବେ
ଭେଦ ବିନା କରମରେ,
ଜଣଙ୍କର ଦୁଃଖେ          ଦରଦ କମାଇ
ନ ଜାଗେ ଅନ୍ୟ ଅନ୍ତରେ । ୧୮ ।

ମଣିଷ ମଣିଷ ଭିତରେ ବିଭେଦ

ଅଧର୍ମ କରଇ ସୃଷ୍ଟି,

ଅଧର୍ମ ହଟିଲେ ବିଭେଦ ହଟିବ

ସ୍ନେହ ବାରି ହେବ ବୃଷ୍ଟି । ୧୯ ।

କିଏ ସମରଥ ଅଧର୍ମ ରାଜତ୍ୱ

କରିବାକୁ ବିଲୋପନ ?

ଯୁଗେ ଯୁଗେ ପ୍ରଭୁ ଅବତାର ହୋଇ

କରିଥାନ୍ତି ସମାଧାନ । ୨୦ ।

ଆସିବ ସେ ବେଳ ଆଶା ବାନ୍ଧିଅଛୁ

ପ୍ରଭୁ ହେବେ ସୁପ୍ରସନ୍ନ,

ଦୁଃଖର କାଳିମା ହଟିବ ସମାଜୁ

ସର୍ବେ ହୋଇବେ ସୁଖୀନ । ୨୧ ।



# କର୍ମଫଳ

( ସବୁବେଳେ ଭଗବାନଙ୍କୁ ସ୍ମରଣ କରିବା ସମସ୍ତଙ୍କର କର୍ତ୍ତବ୍ୟ ।
ଭଲମନ୍ଦ ବସ୍ତୁର ତାହାର କାରଣ ହେବା ଉଚିତ୍ ନୁହେଁ ।
ଭଲମନ୍ଦ ତ କର୍ମ ଅନୁସାରେ ହୁଏ । )

ଭଲ କାମ ଯେତେ 'ମୁଁ କଲି' 'ମୁଁ ଦେଲି'
ବୋଲି ଦମ୍ଭେ କହୁଥାଅ,
ମନ୍ଦବେଳେ କମ୍ପା ହାତ ଗୋଡ଼ ଜାକି
ଆଖି କାନ ବୁଜି ଦିଅ ? । ୧ ।

ଭଲର କରତା ତୁମେ ସଦାପ୍ରଭୁ
ମନ୍ଦର କି ଅନ୍ୟ କେହି,
ମନ୍ଦ ଘଟିବାକୁ ଶକ୍ତି ନାହିଁ ବୋଲି
ଲାଜ କି ମାଡ଼ୁ ଅଛଇ ? । ୨ ।

ଭଲ ମନ୍ଦ ମିଶି ଗଢ଼ିଲି ଏ ସୃଷ୍ଟି
ମନ୍ଦକୁ ହେଉଛ ଆଡ଼,
ନିୟମ ଖିଲାପ କିଏ ଦର୍ଶାଇବ
କହେ କାର ଅଛି ହାଡ଼ ? । ୩ ।

ଖୁସୀ ହେଲେ ଯେବେ ଭଲ ଦିଅ ପ୍ରଭୁ
ବେଖୁସିରେ ଦିଅ ମନ୍ଦ,
ସତ ଯେବେ ଏହା ମନ୍ଦ ବେଳେ କମ୍ପା
ତୁମ ପାଖେ ଏତେ କାନ୍ଦ ? । ୪ ।

ବେଖୁସୀ ହୋଇଛ        ମନ୍ଦ ଦେଲ ଅନ୍ନ
ଭୋଗିବାକୁ ହେବ ତାହା,
ଜଣାଣ ବନ୍ଦାଣ        କାତର ପ୍ରାର୍ଥନା
ନୁହେଁ କି ବୋକାମି ସିଧା ? । ୫ ।

ପ୍ରାର୍ଥନାରେ ଯଦି        ମନ୍ତ୍ର ଉଲଟାଅ
ମୋ ପାଇଁ କାହିଁକି ଭିନ୍ନ,
ମନ୍ତ୍ର ନିୟମର        ଠିକଣା ରଖୁନା
କାହିଁକି ହେ ଭଗବାନ ? । ୬ ।

ଜଟିଳ ମନ୍ତ୍ରର        ଅର୍ଥ ଅର୍ଥାନ୍ତର
ଆମକୁ ପଡୁନି ଜଣା,
ମନ୍ତ୍ର ବିଶାରଦେ        ପାଉଣା ନେଇ ବି
ଆମକୁ କରନ୍ତି ବଣା । ୭ ।

ନିଜ ଦୁଃଖୁ ତୁମ        ମନ୍ତ୍ର ଜଟିଳତା
ବାଧୁଛି ଅଧିକତର,
ପ୍ରାର୍ଥନା କରୁଛି        ଦୟାବନ୍ଧୁ ପ୍ରଭୁ
ସରଳ ନିୟମ କର । ୮ ।

ଯେପରି କରମ        ସେପରିଟି ଫଳ
ହୁଏ ଯଦି ତୁମ ମନ୍ତ୍ର,
ଠିକଣା ଭାବରେ        ଲିପିବଦ୍ଧ ହେଉ
ଉଠିଯାଉ ଖୋସାମନ୍ତ୍ର । ୯ ।



# ସନ୍ଦେହ

( ସନ୍ଦେହ ଇନ୍ଦ, ପର ଉଭୟ ସୁଖ ଲଭରେ ଅନ୍ତରାୟ । )

ଅନ୍ତର୍ଯାମୀ ପ୍ରଭୁ ଅନ୍ତରେ ରହନ୍ତ
ଅନ୍ତର କଥା ତ ଜାଣୁଅଛ,
ଜାଣି ପ୍ରତିକାର .ନକରିବ ଯେବେ
କିମ୍ପା ଅନ୍ତର୍ଯାମୀ ବୋଲଉଛ ? । ୧ ।
ଦୟାମୟ ବୋଲି କହୁଥାନ୍ତି ବୁଧେ
ମାତ୍ର ମୋ ମନ ତ ମାନୁନାହିଁ,
ଦୁଃଖେ ବେଳେ ଯଦି ଦୟା ନ ଝରିଲା
ଦୟା ସଞ୍ଚିଅଛ କାହିଁପାଇଁ ? । ୨ ।
ଜପିଲେ ତୁମକୁ ଖୁସୀ ହୁଅ ବୋଲି
ଜପୁଛୁ ମୁଁ ସଦା ଦିନରାତି,
ଖୁସୀ ହୋଇଥିଲେ ଦୁଃଖ ଅଶାନ୍ତି କି
ପାତକୀ ପରି ମୁଁ ଭୋଗୁଥାନ୍ତି ? । ୩ ।
ଭୁଲୁଛି କେଉଁଠି ତୁମଠି କି ମୋଠି
ବତାଇବ କିଏ ଠିକ୍ କରି,
କହିଦିଅ ପ୍ରଭୁ କପଟ ନକରି
ନୋହିଲେ ଦୁଃଖରେ ଗଲି ସରି । ୪ ।

— ❀ —

# ଅକାରଣ

( ଅକାରଣ ପ୍ରେରଣା ଜନିତ କାମରେ ପ୍ରଭାବିତ ହେବା ଉଚିତ୍ ନୁହେଁ )

ଦିନେ ପ୍ରାତେ ନଈ ବନ୍ଧେ ବୁଲି ଫେରୁଥିଲି,
ଦୂରରୁ ଦେଖିଲି ତେଣୁ ଆସୁଛି ବକିଲ । ୧ ।
ନିକଟେ ପହଞ୍ଚି ଯୁଞ୍ଜି ଗଲା ଦୁଇ ହାତ,
ଆଡ଼ ହୋଇ ମୁଣ୍ଡ ନଇଁ କଲା ଦଣ୍ଡବତ । ୨ ।
ଚକିତ ହୋଇ ମୁଁ ଚାହିଁ ପୁଚ୍ଛିଲି କୁଶଳ,
ମିତ ହସି ଆଜ୍ଞାବୋଲି କରିଲା ଉତ୍ତର । ୩ ।
ତା ବାଟେ ସେ ଗଲା ମୋର ବାଟେ ମୁଁ ଆସିଲି,
ଘଟଣା ମନରୁ ମାତ୍ର ଭୁଲି ନପାରିଲି । ୪ ।
କାହିଁକି ବକିଲ ମୋତେ ଦେଲା ଏ ସମ୍ମାନ,
ନାହିଁତ ତାହା ସହିତ ମୋର ଦେଣ୍ ନେଣ୍ । ୫ ।
କରିତ ନାହିଁ ମୁଁ କେବେ ତାର ଉପକାର,
କିପାଇଁ ମୋ ପ୍ରତି ତାର ଏତେ ସଦାଚାର ? । ୬ ।
ପଡ଼ିଶା ଘରେ ତା ସ୍ତ୍ରୀ ପାଇଟି କରଇ,
ସେ ଘରେ ବନ୍ଧୁତା ମୋର ସେ ଜାଣି ଅଛଇ । ୭ ।
ଏହି ହିସାବରେ ଯଦି ଦେଉଥାନ୍ତା ମାନ,
ଅଜ୍ଞାତ ସାକ୍ଷାତ ସବୁ ହୁଅନ୍ତାନ ଭିନ୍ନ । ୮ ।
ବହୁବାର ତାର ସାଥେ ହୋଇଅଛି ଭେଟ,
ସମ୍ମାନ ଦୂରର କଥା, ଟେକେ ନାହିଁ ହାତ । ୯ ।

ଏହିପରି ଗଳ୍ପ କହୁ ଦିନ ସ୍ତବନାରେ,
ଜାଣିଲି ସ୍ୱାର୍ଥ ଆଶା ତା ନାହିଁ ମୋ ହିତାରେ । ୧୦ ।
ମୁଣ୍ଡ ଦୋଷ ତାର କହୁ ନାହିଁ ମୁଁ ଜାଣେଇ,
ଥିଲେ ଏ କାମ ତାହାର ପାଗଳାମି କହି । ୧୧ ।
ପ୍ରକୃତ ସମ୍ମାନ ବୋଧ, ଭକ୍ତି ଅବା ଭୟ,
ନାହିଁ ତାହାର ମୋ ପ୍ରତି, ହେଲି ନିଃସନ୍ଦେହ । ୧୨ ।
'ମନହେଲା' ଛଡ଼ା ଆଉ ଅନ୍ୟ ହେତୁ ନାହିଁ,
ଏହିପରି କେତେ କେତେ ଘଟଣା ଘଟଇ । ୧୩ ।
'ମନହେଲା' କାମ ପଛେ ନାହିଁ ଅନୁଧ୍ୟାନ,
ବିଚାର ବିମର୍ଷ ଅବା ତାର୍କିକ ପ୍ରମାଣ । ୧୪ ।
ମିତ୍ରତା ଶତ୍ରୁତା ଅବା ଭଲମନ୍ଦ ଭାବ,
ସୃଜେ ନା ଏ କାମ ଏହା ଅଟଇଟି ଧ୍ରୁବ । ୧୫ ।
ବିକଳର ଦଣ୍ଡବତ ନୁହଇ ସମ୍ମାନ,
ଅବଜ୍ଞା ନୁହଇ ଅବା ହେଲେ ଉଦାସୀନ । ୧୬ ।
ଏକାମରେ ପ୍ରଭାବିତ ନୋହିବା ଉଚିତ,
ମନରୁ ପୋଛିବ ତାହାକୁ ତତ୍‌କ୍ଷଣାତ । ୧୭ ।



# ପରୋପକାର

( ତୁମ ପାଇଁ ଅନ୍ୟ ପରହେଲେ ତୁମେ ତାହାପାଇଁ ପର । ତେଣୁ ପରୋପକାର ଦ୍ୱାରା ସମସ୍ତଙ୍କର ହିତ ସାଧିତ ହୋଇଥାଏ । )

ବିପଦରେ ପଡ଼ି କଷ୍ଟ ପାଉଥିବା
ଲୋକ ଯେବେ ତୁମ ଠାରୁ,
ସେବା ବା ସାହାଯ୍ୟ ପାଇ ମୁକ୍ତ ହୁଏ
ଅନ୍ୟ କି ବଡ଼ ଏଥି ଠାରୁ ? । ୧ ।

ତୁମର ସାମାନ୍ୟ କଷ୍ଟରେ ଅନ୍ୟର
ଯଦି ହୁଏ ସୁଖ ଲାଭ,
ବିମୁଖ ନ ହୁଅ ସେ କଷ୍ଟ ସହଣେ
ଅନ୍ୟ କି ଏଥି ସମ ହେବ ? । ୨ ।

ତୁମ ଦୟା ପାଇଁ କେହି ଯଦି ପ୍ରାର୍ଥୀ
ତୁମକୁ ଏହା ସୁଯୋଗ,
ଦୟା ଦେଖାଇଲେ ଯେଉଁ ପୁଣ୍ୟ ହୁଏ
ଦିଏ କି ଅନ୍ୟ ଉଦ୍ୟୋଗ ? । ୩ ।

ଦୟା ଯେ ଭୋଗଇ ଉପକୃତ ହୁଏ
ଶୁଦ୍ଧ ହୁଏ ଦାତା ପ୍ରାଣ,
ଅନ୍ୟେ ସୁଖ ଦେଇ ନିଜେ ସୁଖୀ ହେବା
ନୁହେଁ କି ଉତ୍କୃଷ୍ଟ ଗୁଣ ? । ୪ ।

ତୁମେ ମନ ଦେଲେ କାହାର ସମସ୍ୟା
ହୁଏ ଯଦ୍ଧ ସମାଧାନ,
ଶତ୍ରୁ ମିତ୍ର ଭାବ ଏଡ଼େଇଣ ତାହା
କରିବାରେ ଦିଅ ଧ୍ୟାନ । ୫ ।

ଶାସ୍ତ୍ର କହେ ପର ଉପକାର କଲେ
ସ୍ୱର୍ଗ ଲଭ୍ୟ ହୁଏ ବୋଲି,
ହେଜ ଶାସ୍ତ୍ର ବାଣୀ ଏ ମହତ୍ କର୍ମେ
ଦିଅ ମନ ଧନ ଢାଳି । ୬ ।

ପରହିତ ଠାରୁ ବଳି ପୁଣ୍ୟ କାମ
ଅନ୍ୟ କିଛି ଭବେ ନାହିଁ,
ନିଜେ ଶୁଦ୍ଧ କରି ଅନ୍ୟେ ଦୁଃଖ ଦେଇ
ସମାଜ ହିତ ସାଧଇ । ୭ ।

ତାତ୍ତ୍ୱିକ ଅର୍ଥରେ ପର କେହି ନୁହେଁ
ଏକ ଆତ୍ମା ସର୍ବ ଦେହେ,
ପର ପାଇଁ ଯାହା କରିବ ପରୋକ୍ଷେ
ନିଜ ହିତ ସାଧିଥାଏ । ୮ ।

ତୁମ ପାଇଁ ଅନ୍ୟ ପର ହେଲେ ତୁମେ
ତାହା ପାଇଁ ଅଟ ପର,
ଯେଉଁ ଭାବେ ତୁମେ କରିବ ଏ କାମ
ସେ ଭାବ ବି ଥିବ ତାର । ୯ ।



# ଭଗବଦ୍ ସ୍ମରଣ

( ଏଥିରେ ଭଗବଦ୍ ସ୍ମରଣକୁ ବନ୍ଧୁ ରୂପେ କଳ୍ପନା କରାଯାଇଛି । )

ପରବ ପର୍ବାଣି ଷୋଡଶବ୍ରତ ଠାରୁ
ବିବାହ ବ୍ରତ ପର୍ଯ୍ୟନ୍ତ,
ଆମୋଦ ପ୍ରମୋଦ ନିତି ମଜ୍‌ଲିସ୍
ହୁଏ ମୋ ଘରେ ଖାଲି । ୧ ।

କୌଣସି ଉତ୍ସବେ ବନ୍ଧୁଙ୍କର ପାଦ
ପଡ଼େ ନାହିଁ ମୋର ଘରେ,
ଲୁଚି ଛପିକରି ରହନ୍ତି କୁଆଡେ
କି ଆନନ୍ଦ ତାଙ୍କୁ ମିଳେ ? । ୨ ।

ମାତ୍ର ଯେତେବେଳେ ଜର କି ବାଧକ
ଅବା କୁଟୁମ୍ବରେ ଦୁଃଖ,
ଧନ ହାନି କମ୍ବା ଶତ୍ରୁର ଜଞ୍ଜାଳ
ଘଟେ ଆସି ମୋର ପାଖ । ୩ ।

ସେତେବେଳେ ବନ୍ଧୁ କୁଆଡ଼େ ଥାଆନ୍ତି
ହୁଅନ୍ତି ଆସି ହାଜର,
ଆଶା ଆଶ୍ୱାସନା ସଞ୍ଚାରି ମନରେ
ଲଘବନ୍ତି ଦୁଃଖ ଭାର । ୪ ।

ଛୁଟିଲେ ଜଞ୍ଜାଳ କୁଆଡ଼େ ପଳାନ୍ତି
ନ ମିଳଇ ଆଉ ଦେଖା,
କପଟ ସ୍ୱଭାବ ବନ୍ଧୁଙ୍କର ସତେ
ଇଏ କି ବନ୍ଧୁରେ ଲେଖା । ୫ ।

ଭଲବେଳେ ଲୋଡ଼ା ନାହିଁ ବୋଲି କ'ଣ
ବନ୍ଧୁ ଆସିବାକୁ ମନା,
ଆଦର ଚରଚା ହୁଅଇ ସେବେଳେ
ବନ୍ଧୁପ୍ରୀତି ବଢ଼େ ଯିନା । ୬ ।

ଅନାଦର କେବେ କରିଅଛି କି ମୁଁ
ସମ୍ପଦରେ ହୋଇ ଭୋଳ,
ସେ ପାଇଁ ବିରାଗ ଭାବ ବନ୍ଧୁ ମନେ
ହେଉଅଛି ଆଜ ଆଉ ? । ୭ ।

ସମ୍ପଦର ବନ୍ଧୁ ବିପଦ ବେଳରେ
ଦେଖା ଯଦ ନ ଦିଅଇ,
ନୁହଁଇ ସେ କେବେ ପ୍ରକୃତ ବାନ୍ଧବ
ଶାସ୍ତ୍ର ଏହା କହୁଥାଇ । ୮ ।

ନୁହେଁ ଏହା ଅର୍ଥ ବିପଦର ବନ୍ଧୁ
ସମ୍ପଦରେ ଯଦ ଲୁଚେ,
ପ୍ରକୃତ ବାନ୍ଧବ ତଥାପି ସେ ହେବ
ଶାସ୍ତ୍ର ଯାହା କହୁ ପଛେ । ୯ ।

ପ୍ରକୃତ ବନ୍ଧୁର ଗୁଣ ହେଲା ଯିଏ
ଦୁଃଖ ସୁଖ ସବୁବେଳେ,
ହାଥୀ ଘର ପାଖେ ପାଖେ ରହୁଥାଏ
ଡାକିଲେ ଯବାବ ମିଳେ । ୧୦ ।

ସେ ପାଇଁ ନେହୁର ହୋଇ ମୁଁ କହୁଛି
ଶୁଣ ବନ୍ଧୁ ମୋର କଥା,
ଭଲ ମନ୍ଦ ସବୁ- ବେଳେ ସଙ୍ଗୋଳିବ
ତେବେ ଯିନା ଘନିଷ୍ଠତା । ୧୧ ।

# ଭକ୍ତି

( ଦୁଃଖ ବେଳେ ମନ ଯେପରି ଭଗବାନଙ୍କ ଆଡକୁ ଯାଏ, ସୁଖବେଳେ ସେପରି ହୁଏ ନାହିଁ । ସେଥିପାଇଁ ଭକ୍ତ ଭଗବାନଙ୍କୁ ଦୁଃଖ ମାଗୁଛି । ଭଗବାନଙ୍କୁ ଭଲ ପାଇଲେ ସେ ନିଶ୍ଚୟ ଭଲ ପାଇବେ । )

ଦୁଃଖବେଳେ ଲୋକ ସୁରେ ପ୍ରିୟଜନେ
ଇଚ୍ଛେ ପାଖେ ପାଇବାକୁ,
ସେହିପରି ପ୍ରଭୁ ଦୁଃଖବେଳେ ତୁମ
କଥା ଛୁଏଁ ମୋ ମନକୁ । ୧ ।

ସେହିଥିରୁ ମୁହିଁ ଜାଣୁଅଛି ପ୍ରଭୁ
ତୁମେ ଅଟ ମୋର ପ୍ରିୟ,
ମାତ୍ର ମୁଁ ତୁମର ପ୍ରିୟ ଅଟେ ବୋଲି
ମନେ ନ ଆସେ ପ୍ରତ୍ୟୟ । ୨ ।

ମୁଁ ତୁମର ପ୍ରିୟ ଅଟଇ କି ନାହିଁ
କହି ଦିଅ ପ୍ରଭୁ ବାରେ,
ଯାଉ ମୋ ସନ୍ଦେହ ସ୍ୱଚ୍ଛ ହେଉ ମନ
ବିରାଜ ସଦା ତହିଁରେ । ୩ ।

ତୁମ ପ୍ରିୟ ହେବା ପାଇଁ ଯଦି ଯୋଗ୍ୟ
ନ ହୋଇଛି ମୁହିଁ ଏବେ,
ମୋ ପ୍ରୀତି କି ପ୍ରଭୁ ନିଷ୍ଫଳ ହୋଇବ
ପ୍ରତ୍ୟାଖ୍ୟାତ ହେବ ଭବେ । ୪ ।

ଏପରି ହେବାତ ନିୟମରେ ନାହିଁ
ଜଣାଅଛୁ ମତେ ଭଲେ,
ପ୍ରେମ ଦେଇ ପ୍ରେମ ନ ପାଇବା କଥା
ଶୁଣାତ ନାହିଁ ଭବରେ । ୫ ।

ତୁମେ ମୋର ପ୍ରିୟ ମୁଁ ତୁମର ପ୍ରିୟ
ସନ୍ଦେହ ନାହିଁ ଏଥିରେ,
ତଥାପି ଟିକଏ ଭରସା ତୁମଠୁ
ପାଇବାକୁ ମନ ଝୁରେ । ୬ ।

ଦୁଃଖ ଲାଗି ଯିନା ପ୍ରୀତି ତୁମ ସଙ୍ଗେ
ଦୁଃଖ ହେଉ ସହଚର,
ଲଭିବ ସୁଯୋଗ ସଦା ଚାହିବାକୁ
ତୁମ ବନ୍ଧୁତା ଅପାର । ୭ ।



# ଉଦ୍‌ଯୋଗ

( ଉଦ୍‌ଯୋଗ ବିହୀନ ଲୋକ ସ୍ୱଗ୍ୟ ସ୍ୱଗ୍ୟ ହୋଇ ହୀନତା ପ୍ରାପ୍ତ ହୁଏ । )

ମନ କହୁଛି ବଡ଼ ହୋଇବ
　　　　କରମ ଟାଣେ ଗୋଡ଼,
ନିୟତି ବସିଛି ଜାକଜୁକ
　　　　କରୁଛି ତାକୁ ଜାଡ ।୧।

ମନ କହୁଛି କଟକ ଯିବ
　　　　ପାର ହୋଇବ ନଈ,
କରମ ନିଦୁ ଉଠିଛି ବସି
　　　　ମାରୁଛି ଖାଲି ହାଇ । ୨ ।

ନିୟତି କହୁଛି ରହ ରହ
　　　　ଦେଖିବାନ କ ପାଞ୍ଜି,
ନଈ ଡ଼ିଆଁ କ ପାହାଡ ଚଢ
　　　　ପରଖି ନଅ ମଞ୍ଜି । ୩ ।

ମନ ଚଡ଼ିଲା କହିଲା ଏବେ
　　　　ବସ୍ତୁରେ ନାହିଁ ଲଭ,
ସିଧା ସଳଖ ଚାଲିବ କାଳ
　　　　ଯୁଆଡ଼େ ହେବ ଶୁଭ । ୪ ।

ଶୁଣି କରମ୍ ଗୋଡକୁ ଦେଖେ
ପାଦ ଯାଇଛି ଫୁଲ,
ନପୁନ୍ତ ଆଡ଼େ ନଜର ଦେଇ
ରହଇଁ ବୋକା ଭଳି । ୫ ।
ନପୁନ୍ତି କହିଲା ନାଇଁ ନାଇଁ
ଏଇଠି ଅଛି ବାଗ,
ଧରାଧରି ନେହୁରା କଲେ
ମିଳିଯିବ ସୁଯୋଗ । ୬ ।
କାହାର ଢଙ୍ଗ କାହାର ମେଳ
ନାହିଁ ପଡ଼ୁଛି ଜଣା,
କର୍ମ ଅଳସ, ମନ ବାଉଳ
ନପୁନ୍ତି ପୂସ ବଣା । ୭ ।
ବଡ଼ତ ନାହିଁ ସାନ ବି ନାହିଁ
ହୋଇଲା ନଉଛୁଣା,
ନନ୍ଦଇ କରମ, ନପୁନ୍ତିକୁ
ମାରଇ ଚଟକଣା । ୮ ।



# ଉତ୍ତର

( ଉପଯୁକ୍ତ ଉତ୍ତର କରି ନପାରି ଭୁଲ୍‌କୁ ଠିକ୍ ଭାବି ଆଗେଇଲେ ଭୁଲ୍‌ର କୁପରିଣାମ ଅବଶ୍ୟ ଭୋଗିବାକୁ ହୁଏ । )

ପର୍ବତ ଶିଖରେ କୁଡ଼ିଆ କରିଲି
ପବନରେ ଗଲା ଉଡ଼ି,
ସମୁଦ୍ର ବେଳାରେ ଶେଜ ପାଡ଼ି ଥିଲି
ଜୁଆର ନେଲା ତା ଚଢ଼ି । ୧ ।

ନଈ ଅତଡ଼ାରେ ଫସଲ ବୁଣିଲି
ଅତଡ଼ା ଖିଆରେ ଗଲା,
ବାଲୁକା ଉପରେ କୋଠା ତୋଳିଥିଲି
ତୋଳୁ ତୋଳୁ ଭୁଷୁଡ଼ିଲା । ୨ ।

ଲୁଣିଆ ମାଟିରେ ରୋପିଲି ପାଦପ
ଝାଉଁଳି ଝାଉଁଳି ମଲା,
ନଈ ବନ୍ଧ ତଳେ ଘର କରିଥିଲି
ଅକାଳ ବଢ଼ିରେ ଗଲା । ୩ ।

ଭଲ ଭେଲ କିଛି ଜାଣି ନ ପାରିଲି
ଭୁଲ୍ ପରେ ଭୁଲ୍ କଲି,
ମୋ ଭୁଲ୍‌ର ଫଳ କିଏ ବା ଭୋଗନ୍ତା
ସଦା ହଇରାଣ ହେଲି । ୪ ।

ବେଠିକ୍ କରମ — ଯେତେ ଯେତେ କଲି
ଜଣା ତ ପଡ଼ୁ ନ ଥିଲି,
ବରଂ ମନୋହର — ଅତି ସୁଖକର
ବୋଲି ସିନା ଜଣାଗଲା । ୫ ।

ପର୍ବତ ଶିଖରେ — ଯେଉଁ ଖୋଲା ହାଓ୍ୱା
ଅନ୍ୟ କେଉଁଠି କି ମିଳେ,
ଲହରୀର ଦୃଶ୍ୟ — ଉପଭୋଗ୍ୟ ହୁଏ
ବେଳାରେ ଶପୂନ କଲେ । ୬ ।

ଯାହାକୁ ଭାବିଲି — ଭଲ ବୋଲି ସିନା
ସେହି ହେଲେ ମୋର କାଳ,
ପର୍ବତେ ପବନ — ବେଳାରେ ଲହରୀ
ବୁଡ଼ାଇଲେ ମୋର ଥାନ । ୭ ।

ନଈର ଅଡଡ଼ା — ପଟୁ ପଡ଼ ପଡ଼
ହୋଇ ଅଛଇ ଉର୍ବର,
ଫସଲ ପାଇଁ ତା — ଅତି ଉପଯୋଗୀ
ଭୁଲ୍ ନୁହେଁ ମୋ ବିଚାର । ୮ ।

ମାଛ ନଈ ସୁଅ — ସାଙ୍ଗେ ତାର ପ୍ରୀତି
ସୁଅ ସାଙ୍ଗେ ଗତି କରେ,
ଏ ଅବଗୁଣଟି — ଜାଣିଥିଲେ କି ମୁଁ
ପଡ଼ିଥାନ୍ତି ବିପଦରେ ? । ୯ ।

ଅକର୍ମା ନଦନ୍ତ — ଭୂମି, ଏ ଭ୍ରାନ୍ତରେ
ଗଲି ମୁହିଁ ଭୋଳ ହୋଇ,
ଲୁଣିଆ ମଧୁର — ବିଚାର ନ କରି
ପକାଇଲି ଗଛ ଟେକି । ୧୦ ।

ବନ୍ଧତଳେ ଅନ୍ଧ — ରହେ ନାହିଁ ମତି
ମତେ ଜଣାଗଲା ନାହିଁ,
ବନ୍ଧ ଭରସାରେ — ରଚିଲି ନିବାସ
ବନ୍ଧ ଭାଙ୍ଗି ଗଲା ଧୋଇ । ୧୧ ।

ଗୋଟିଏ ବସ୍ତୁରେ ଭଲ ହେଲେ ମଧ୍ୟ
ଅନ୍ୟ ବସ୍ତୁରରେ ମନ୍ଦ,
ଉଭୟ ବସ୍ତୁର ମନେ ନ ଘେନିଲେ
ଏଡ଼ାଇ ନୁହେଁ ବିପଦ ।୧୨।

ସାପ ମୁଣ୍ଡେ ମଣି ଘେନ ଥାଏ ବୋଲି
ସାପ କି ଆଦରଣୀୟ,
ଚହ୍ନଣ ପୂର୍ବରୁ ଭଲ ମନ୍ଦ ସବୁ
ନୁହେଁ କି ବିଚାରଣୀୟ ? ।୧୩।



# ଗଛ

( ଜୀବନ ଧାରଣ ପାଇଁ ଗଛର ଭୂମିକା ହୃଦୟଙ୍ଗମ କରି ତାହାର ସୁରକ୍ଷା ପାଇଁ ଧ୍ୟାନ ଦେବା ସମସ୍ତଙ୍କର କର୍ତ୍ତବ୍ୟ )

ମାଟି ଉପରେ ଠିଆ ହୋଇ
ଗଛ ଧରେ କାୟ,
ଝଡ, ବର୍ଷା, ପବନକୁ
ନ ଥାଏ ତାର ଭୟ । ୧ ।

ଫଳ, ଛାୟା ଦାନ କରିଣ
ତୋଷେ ଜନ ମନ,
ଲୋଡେ ନାହିଁ ହେଥି ପାଇଁ ସେ
କେବେ ପ୍ରତିଦାନ । ୨ ।

ଅଙ୍ଗ ଛେଦ ଅବା ହୋଇଲେ
ପୁଣ ଭୂମିଶାୟୀ,
ଗଛ ନାମ ଲୋପ ହୁଏ
କାଠ ତାହାକୁ କହି । ୩ ।

ନାନା କାମରେ ଲାଗଇ କାଠ
ଅତି ଆବଶ୍ୟକ,
ଦିନୁ ଦିନୁ ଗୃହୀତା ତାର
ହୁଅଇ ବ୍ୟାପକ । ୪ ।

ଏତିକରେ ଗଛର କାମ
ନୁହଁଇ ସୀମିତ,
ଆହୁରି କେତେ କାମ ତାର
ଅଛଇ ଗୁପତ ।୫।
ବଜ୍ଞାମାଏ ବୁଝନ୍ତି ତା'ବା
ଆମକୁ ଅଜଣା,
କାଠ, ଫଳ, ଛାୟା ମାତ୍ର
କରୁ ଆମେ ଗଣନା ।୬।
ଫଳ, ଛାୟା ମୂଲ୍ୟ ବା କେତେ
ହାଣି କାଠ ପାଇଁ,
ଗଛ ଶୂନ୍ୟ ଧରାକୁ କରୁ
ବେପରୁଆ ହୋଇ ।୭।
ବଜ୍ଞାମାଙ୍କର ବାର୍ତ୍ତା ଆମେ
ନ ଘେନୁ ମନରେ,
ଗଛ କାଟି ନଜର କ୍ଷତି
କରୁ ପରୋକ୍ଷରେ ।୮।
ନଶ୍ୱାସରେ ଛାଡୁ ଯାହା
ଅଙ୍ଗାରକାମ୍ଳ କହ୍ୱ,
ଦୂଷିତ ତାହା, ଗଛ ତାହାକୁ
ଶୋଷିଣ ଥାଇ ।୯।
ଅମ୍ଳଜାନ ବତରଣ
କରଇ ତାହା ସ୍ଥାନେ,
ପ୍ରଶ୍ୱାସରେ ନେଇ ତାହାକୁ
ଜୀବନ ରକ୍ଷଣେ ।୧୦।
ଗଛ ନ ଥିଲେ ଅମ୍ଳଜାନ
କାହୁଁ ବା ମିଳବ,
ଅଙ୍ଗାରକାମ୍ଳ ଦୂଷିତ
ବାୟୁ କଏ ଶୁଦ୍ଧିବ ।୧୧।

ଜଳ ଅଟେ ଜୀବନ
ଗଛ ତାହାର ଧାରକ,
ଗଛ ନଥିଲେ ଜଳ
ପାଇବା କଷ୍ଟକାରକ । ୧୨ ।
ବାରିଷା ଧାରା ଯେତେ
ପଡ଼ଇ ଗଛ ଦେହରେ,
ତାହାକୁ पिଏ ସାଇତି
ରଖେ ମାଟି ତଳରେ । ୧୩ ।
ଗଛ ନ ଥିଲେ ବରଷା
ଜଳ ଯାଆନ୍ତା ବୋହି,
ଭୂପୃଷ୍ଠର ମୃତ୍ତିକା ଯିବ
ତା ସଙ୍ଗରେ ଧୋଇ । ୧୪ ।
ଭୂତଳର ଜଳ ଧାରର
କ୍ଷୟର ପୂରଣ,
ନ ହୋଇ ପାରି କ୍ରମେ ତାହା
ହୋଇଯିବ ଶୂନ । ୧୫ ।
ମୃତ୍ତିକାକ୍ଷୟ ହେତୁ
ଝାଙ୍ଗର ହୋଇବ ଭୂଇଁ,
ରୁକ୍ଷ ହୋଇବ ଧରାପୃଷ୍ଠ
ଶସ୍ୟ ନ ଉପୁଜଇ । ୧୬ ।
ବହୁ ଗଛ ଯହିଁ ଥାଇ
ବଣ ଜଙ୍ଗଲ କହି,
ବରଷା ଜଳ ଅନାୟାସେ
ଭୂତଳକୁ ଯାଇ । ୧୭ ।
ଭୂତଳର ଜଳଧାର
ସଂରକ୍ଷିତ ରହେ,
ଗଛ ଶୂନ୍ୟ ସ୍ଥାନେ ଏହା
ସମ୍ଭବ ନ ଥାଏ । ୧୮ ।

ସହଜ ଲଭ୍ୟ ଜଳ ଯେଠି
ମାଟି ଖୋଳି ପାଉଁ,
ଟାଙ୍ଗର ଭୂଇଁ ତଳେ
ଜଳ ମିଳିବ ବା କାହୁଁ ? । ୧୯ ।
ଜଳ ଶୂନ୍ୟ ଶସ୍ୟସ୍ଥାନ
ହୋଇବ ଯେବେ ଧରା,
କ ଉପାୟେ ବଞ୍ଚିବ ପ୍ରାଣୀ
ଭାବ ଟିକେ ପରା । ୨୦ ।
ଜଙ୍ଗଲ ନାଶି ଶିଳ୍ପ ଗଢ଼ି
ଲଭୁ ପରିତୋଷ,
ପରିଣାମେ କରିବ ତାହା
ମାନବକୁ ଧ୍ୱଂସ । ୨୧ ।
ଗଛ ଏତେ ଉପକାରୀ
ଆମ ଜୀବନ ସାଥୀ,
ତା'ର ସୁରକ୍ଷା ପାଇଁ
ଆମେ ଦେବାନି କ ମତ ? । ୨୨ ।
ନିଜର ଅହିତ ପୁଣି
ସମାଜର କ୍ଷତି,
କରଇ ଯେଉଁ କାମ ତାହା
ପାପରେ ଗଣତି । ୨୩ ।
ଗଛ କଟା କାମଟିକୁ
ପାପ ବୋଲି ଜାଣ,
ପାପ କରିବାକୁ କେବେ
ବଳାଅନି ମନ । ୨୪ ।



# ସ୍ତ୍ରୀ

( ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ ମନର ସମ୍ବନ୍ଧ । ବାହାର କାମଦାମର ପ୍ରଶ୍ନ ନଗଣ୍ୟ । )

ସ୍ତ୍ରୀ ନ ଅଟଇ ଘର ଜଗୁଆଳୀ
ସନ୍ତାନ ମାନଙ୍କ ଧାଈ,
ଚୂଲ୍ଲି-ବନ୍ଧ ନ ସେ ଘୃତ ଜଳଖିଆ
ରନ୍ଧ ପରଷିବା ପାଇଁ ? । ୧ ।

ସ୍ୱାମୀ ରୋଜଗାର ହିସାବ ରଖିବା
ଅଟଇ ନ ତାର କାମ,
ବନ୍ଧୁ ବାନ୍ଧବଙ୍କ ଚରଗୁ ପାଇଁ ସେ
କମାଇଁ କରିବ ଶ୍ରମ ? । ୨ ।

ସ୍ୱାମୀ ଗସ୍ତକମ ଖିଆଲ କରିବା
ଅଟଇ ନ କାମ ତାର,
ଦାୟିତ୍ୱ ନ ତାର ସ୍ୱାମୀ ଲୁଗାପଟା
ସାଇତି ସମ୍ଭାଳିବାର ? । ୩ ।

ରୋଗ ବେଳେ ସ୍ୱାମୀ ସେବା କରିବା ନ
ଅଟଇ ତାହାର କାମ,
ସେବିକା ଶୁକର କରନ୍ତୁ ନ ସିଏ
ସ୍ୱାମୀ ଘରେ ଦେବ ଶ୍ରମ ? । ୪ ।

ସ୍ୱାମୀର ହୁକୁମ ତାମିଲ କରିବା
କମ୍ପା ହେବ କାମ ତାର,
ନଉକର ସିଏ କରିବା ପାଇଁ କି
ଆସିଛୁ ସ୍ୱାମୀର ଘର ? । ୫ ।
ଯେତେ ଯେତେ କାମ ବରାଦ ତାହାକୁ
ହୋଇଛୁ କି ସର୍ତ୍ତ ଲେଖା,
ପାଳନ ନ କଲେ ଅବା ହେଳା କଲେ
ସ୍ତ୍ରୀ ପଣେ ଲାଗିବ ଶଙ୍କା ? । ୬ ।
ଅଥବା ଭଲରେ ସମ୍ପାଦନ କଲେ
ସୁଯୋଗ୍ୟା ସ୍ତ୍ରୀ କି ହୋଇବ,
ଅନାବିଳ ପ୍ରେମ ବିକାଶ ଲଭିବ
ସୁଖ ଶାନ୍ତି ବିରାଜିବ ? । ୭ ।
ବାସ୍ତବ ଅବସ୍ଥା ନୁହେଁତ ଏପରି
ଯାହା ଆମକୁ ଦିଶଇ,
ସବୁ କାମ ଦାମ ଭଲରେ ହେଲେ ବି
ସୁଖ ଶାନ୍ତି ନମିଳଇ । ୮ ।
ବରଂ ଦେଖାଯାଏ ଅନପୂଣ ଘରେ
ସରାଗ ସେନେହ ଭରା,
କପର ହୁଏ ତା ଉତ୍ତର କେଉଁଠି
ଧରା ନପଡ଼ଇ ପରା । ୯ ।
ଯାହା କରେ ସ୍ତ୍ରୀଟି କର୍ତ୍ତବ୍ୟ ଭାବିଣ
ଅବା ସ୍ନେହ-ବଶ ହୋଇ,
ପୁରସ୍କାର ନୁହେଁ ଲୋଡ଼ା ତାହା ପାଇଁ
ଭାବିଟିକେ ମନ ଦେଇ । ୧୦ ।
କର୍ମରେ ନିପୁଣ ଅଥବା ବିଗୁଣ
ନୁହଁଇ ତ ବଡ଼ କଥା,
ଅନ୍ତରର ସ୍ନେହ ଲୁକ୍କାୟିତ କରେ
ସବୁ କର୍ମ ମଳିନତା । ୧୧ ।

ପରସ୍ପରେ ସ୍ନେହ ଅନ୍ତରରେ ଯଦି
ବିରାଜମାନ ହୁଅଇ,
ସ୍ନେହବଶ ହୋଇ ତ୍ରୁଟି କେ କାହାର
କେବେ ଦେଖି ନ ପାରଇ । ୧୨ ।
ସ୍ନେହାସନ ପାତ୍ର ସ୍ୱାମୀର ମନରେ
ନ ହୋଇଥିଲେ ଆସୀନ,
ବାହାର କରଣୀ ହେଲେ ହେଁ ନିପୁଣ
ହୁଏ ସିନା ଅକାରଣ । ୧୩ ।
ସ୍ୱାମୀ ସ୍ତ୍ରୀ ସଂପର୍କ ବାହାର କର୍ମରେ
ନୁହଁଇ ପର୍ଯ୍ୟବସିତ,
ମନର ମିଳନ ଅନ୍ୟ ନାମ ଯା'ର
ବୁଝ ଭଲେ ଦେଇ ଚିତ୍ତ । ୧୪ ।
ଉଭୟ ମନର ଭାବ ଅଭାବର
ଜ୍ଞାତ ଯେବେ ଉଭୟରେ,
ନୁହଁଇ ଫଳିତ ନୁହେଁ ଏକମନ
କି ମୂଲ୍ୟ ବାହ୍ୟ କର୍ମରେ ? । ୧୫ ।
କାମ ପାଇଁ କଣ ଲୋଡ଼ା ହୁଏ ସ୍ତ୍ରୀ
ଗୃହର କି ଅପାରଗ,
ଗୃହର ବାହାର ଅଭାବ ନ ଥିଲେ
ସ୍ତ୍ରୀ କି ଅନୁପଯୋଗ ? । ୧୬ ।
ବାହ୍ୟ ସେବା ନୁହେଁ ମନ ସେବା ପାଇଁ
ସ୍ତ୍ରୀ ପୁରୁଷ ସଂଯୋଗ,
ମନ ମିଳିଥିଲେ ବାହ୍ୟ ଅସୁବିଧା
ନାଶି ନ ପାରେ ସରାଗ । ୧୭ ।
ମନର ମିଳନ କପରି ହୋଇବ
ଅଛି କି ନିର୍ଦ୍ଦିଷ୍ଟ ସୂତ୍ର,
ନିଜ ଅନୁଭୂତି ନିଜ ଅନୁଧ୍ୟାନ
ବଳେ ଏହା ସାଧ୍ୟ ମାତ୍ର । ୧୮ ।

ମନ ଜାଣି ମନ ଜଣିବା ପାଇଁ କ
ନ ହୋଇଲେ ଆଗଭର,
ସ୍ତ୍ରୀ ଅଧିକାର ଲମ୍ବା କଥାକହି
ହେଉଥିବ ହରବର । ୧୯ ।
ପ୍ରକୃତି ପୁରୁଷ ସଂଯୋଗେ ହୁଅଇ
ସୃଷ୍ଟି ପ୍ରକ୍ରିୟା ସାଧନ,
ସ୍ୱାମୀ ସ୍ତ୍ରୀ ସଂଯୋଗେ ହୁଏ ସେହିପରି
ସଂସାର କର୍ମ ଭିଆଣ । ୨୦ ।
ପୁରୁଷ ଇଚ୍ଛାର ଅନୁବର୍ତ୍ତୀ ହୋଇ
କରେ ପ୍ରକୃତି କରମ,
ଉଦାସୀନ ହୋଇ ରହଇ ପୁରୁଷ
ଅଟେ ସଂପୂର୍ଣ୍ଣ ନିଷ୍କର୍ମ । ୨୧ ।
ସେ ପାଇଁ ପ୍ରକୃତି ଲୋଡେ ନାହିଁ କେବେ
ପୁରୁଷଠୁ ଉଚ୍ଚାସନ,
ଅନୁଗତ ସଦା ନିଜର ବିହୀନ
ଭାବ ପୂର୍ଣ୍ଣ ସମର୍ପଣ । ୨୨ ।
ଆନୁଗତ୍ୟ ଅର୍ଥ ନୁହଁଇ ଦାସତ୍ୱ
ଭ୍ରମଟି ସେଇଠି ହୁଏ,
ସମର୍ପିତ ହେଲେ ଉପେକ୍ଷିତ ହେବା
କେବେ ସମ୍ଭବଟି ନୁହେଁ । ୨୩ ।
ସ୍ୱାମୀ ସ୍ତ୍ରୀ ସମସ୍ୟା ରହିବନି କେବେ
ଏହି ଭାବେ ଦୃଢ଼ ହେଲେ,
ସ୍ୱାମୀ ଇଚ୍ଛା ଯାହା ସ୍ତ୍ରୀ ଇଚ୍ଛା ତାହା
ପ୍ରଶାନ୍ତି ଜାଗଇ ଭଲେ । ୨୪ ।



# ସଂସ୍କାର

( କର୍ମରେ ଫଳ ଆଶା ନଥିଲେ ସଂସ୍କାର ସୃଷ୍ଟି ହୁଏ ନାହିଁ । )

କର ନାହିଁ ଦୁଃଖ ତୁମ ସେବା ଯେବେ
ନ ହୋଇଲା ଉପଲବ୍ଧ,
ତୁମ ଭଲ କର୍ମ ନୋହିଲେ ଇପ୍ସିତ
କର ନାହିଁ କେବେ କ୍ରୋଧ । ୧ ।

ଭଗବାନ୍ ଧରି କେ କର୍ମକୁ ତଉଳି
କରନ୍ତି ନାହିଁ ଫଳ ଦାନ,
କର୍ମ ନିଜଗୁଣେ ମାନ ଅନୁଯାୟୀ
ଫଳ କରେ ଆକର୍ଷଣ । ୨ ।

କର୍ମରେ ଆମର ଅଧିକାର ସିନା
କର୍ମ ଅନୁଯାୟୀ ଫଳ,
ସଦା ଭଲ କର୍ମ କରୁଥିବା ଯଦି
ଫଳ କମ୍ପା ହେବ ଭେଲ ? ୩ ।

କର୍ତ୍ତବ୍ୟରେ ତ୍ରୁଟି କର ନାହିଁ ପୁଣି
ଦେଇଛ ଅକୁଣ୍ଠ ସେବା,
ଯାହାର ସୁବିଧା ପାଇଁ ନିଜ କଥା
ପଛକୁ ରଖିଲ ଅବା । ୪ ।

ସେହିମାନେ କେବେ ତୁମ କରମର
ନାମ ଗନ୍ଧ ନଧରନ୍ତି,
ବରଂ ବ୍ୟବହାରେ ତୁମର ହୀନତା
ପ୍ରକଟିତ କରିଥାନ୍ତି । ୫ ।

ଭଲ କର୍ମର କି ଏହା ପ୍ରତିଦାନ
ଭାବି ମନେ ଦୁଃଖ ପାଅ,
କରମ ଅନ୍ତର ବ୍ୟତିକ୍ରମ ବୋଲି
ମନେ ମନେ କହୁଥାଅ । ୬ ।

ଭୁଲି ଯାଅ ନାହିଁ କେତେ କେତେ ଜନ୍ମ
ଅତୀତ ହୋଇଛି ଏବେ,
କେତେ କେତେ କର୍ମ କରି ଆସିଅଛ
ସ୍ମରଣ ତା ନୁହେଁ କେବେ । ୭ ।

ବିଗତ ଜନ୍ମରେ ଯାହା ଯାହା କର୍ମ
କରିଛ ତାହାର ଫଳ,
ସଂସାର ରୂପରେ ରହିଛି ସଞ୍ଚିତ
ଏବେ ସେ ତୁମର କାଳ । ୮ ।

ବିଗତ ଜନ୍ମରେ ତୁମେ ବୋଧେ କା'ର
କର୍ମକୁ ଦେଇନା ମାନ,
ଭଲ କର୍ମ କରି ସନ୍ତାପ ଭୋଗି ସେ
କଟାଇଛି ତା ଜୀବନ । ୯ ।

ଏ ଜନ୍ମରେ ତୁମେ ଠିକ୍ ସେହିପରି
ଦୁଃଖୀ କିମ୍ପା ନ ହୋଇବ,
ଯେତେ ଯାହା କଲେ ନ ଘେନିବେ କେହି
ସବୁ ପ୍ରଭାହୀନ ହେବ । ୧୦ ।

ଏ ଜନ୍ମ କର୍ମର ନୁହେଁ ଏହା ଫଳ
ଗତ ଜନ୍ମ କର୍ମ ଭାବ,
ସଂସାର ପ୍ରବାହୁ ନିସ୍ତାର ମିଳେନା
ଜନ୍ମ ଜନ୍ମ ଚାଲିଥିବ । ୧୧ ।

ଯନ୍ତ୍ରୁଁ ନସ୍ତାର ନାହିଁ ତାହା ପାଇଁ
କଷ୍ଟାଇଁ କରବ ଦୁଃଖ,
ଦୁଃଖ ପାଇଁ ଦୁଃଖ କଲେ ତାହା କେବେ
ପାଲଟି ଯାଏ କ ସୁଖ ? । ୧୨ ।

ଫଳ ଆଶା ଯେବେ ନାହିଁ କରମରେ
ସଂସ୍କାର ନୋହବ ସୃଷ୍ଟି,
ସମସ୍ତ ଜଞ୍ଜାଳ ହୋଇଯିବ ଦୂର
ସେ ଢଗେ ରଖିଲେ ଦୃଷ୍ଟି



# ଦିଆ ନିଆ

( ଦିଆନିଆ ସମ୍ବନ୍ଧକୁ ମଧୁର କରେ । )

ଅଚିହ୍ନା ଅଜଣା ଲୋକ କଥା ଭିନ୍ନ
ମାତ୍ର ଯେତେ ଚିହ୍ନା ଜଣା,
କୁଟୁମ୍ବଠୁ ବନ୍ଧୁ ବାନ୍ଧବ ପର୍ଯ୍ୟନ୍ତ
ସର୍ବେ ସମ୍ବନ୍ଧରେ ଗଣା । ୧ ।

ସମ୍ବନ୍ଧ କେଉଁଠି ନିକଟ ଅଥବା
କେଉଁଠି ଅଟଇ ଦୂର,
କେଉଁଠି କେବଳ ଚିହ୍ନା ପରିଚୟ
ସ୍ନେହ ପ୍ରୀତି କାରବାର । ୨ ।

ସମ୍ବନ୍ଧ ସୂତ୍ରରେ ସ୍ନେହ ପ୍ରୀତି ଭାବ
ସ୍ୱଭାବେ ସଞ୍ଚରି ଚାଲେ,
ମାତ୍ର ତାହା କେବେ ହୁଏ ନାହିଁ ଦୃଢ଼
ସମ୍ବନ୍ଧ ଆଶ୍ରାରେ ଥିଲେ । ୩ ।

ଆନନ୍ଦ ସଞ୍ଚାର ନ ହୁଅଇ ଖାଲି
ସମ୍ବନ୍ଧକୁ ଆଶ୍ରା କଲେ,
ସମ୍ବନ୍ଧରୁ ସ୍ନେହ ସହଗ ନ ଝରେ
ମାଧ୍ୟମ ଆଶ୍ରା ନ ଥିଲେ । ୪ ।

ମଧୁର ବଚନ          ଦେହ ଶ୍ରମ ଦାନ
ଦ୍ରବ୍ୟ ତ୍ୟାଗ ଆଦି ଯେତେ,
ରହିଛି ମାଧ୍ୟମ          ପ୍ରୟୋଗରେ ତାହା
ପୁଲକ ଜାଗଇ ଚିତ୍ତେ । ୫ ।

ଦ୍ରବ୍ୟତ୍ୟାଗ ଅବା          ଉପହାର ଦାନ
ଅଟଇ ଶ୍ରେଷ୍ଠ ମାଧ୍ୟମ,
ଏ ମାଧ୍ୟମ ଦେଇ          ବନ୍ଧୁଙ୍କୁ ଭେଟିଲେ
ଆନନ୍ଦ ଅପରିସୀମ । ୬ ।

ପ୍ରଦାନ ହୋଇଲେ          ସ୍ୱାଭାବିକ ଭାବେ
ଆଦାନର ବାଟ ଫିଟେ,
ଆଦାନ ପ୍ରଦାନ          ଜଗତ ନିୟମ
ସମସ୍ତଙ୍କୁ ଏହା ଘଟେ । ୭ ।

ସମାଜେ ଆମର          ଯାବତ ସମ୍ବନ୍ଧ
ରହିଅଛି ଦୃଢ ହୋଇ,
ଆଦାନ ପ୍ରଦାନ          ଦ୍ୱାରା ମାତ୍ର ତାହା
ସମ୍ଭବଟି ହୋଇଥାଇ । ୮ ।

କେହି ଯଦି ଏଥେ          ହୋଇବ ନଜନ
ସେନେହ ସରାଗ ଭାବ,
ଊଣା ହୋଇ କ୍ରମେ          ସମ୍ବନ୍ଧ, ବନ୍ଧୁତା
ଅସାରଟି ହୋଇଯିବ । ୯ ।

ଆଦାନ ପ୍ରଦାନ          ସମତୁଲ ହେଲେ
ବନ୍ଧୁତା ସୁଦୃଢ ହୁଏ,
ଊଣା ଅଧିକରେ          ବଡ଼ ସାନ ଭାବ
ସମତା ବିନଷ୍ଟି ଥାଏ । ୧୦ ।

ଆଦାନକୁ ଲାଭ          ପ୍ରଦାନକୁ କ୍ଷତି
ଭାବିବା ଅଟଇ ଭ୍ରମ,
ଆଦାନ ମାତ୍ରକେ          ପ୍ରଦାନ ପାଇଁକି
ପ୍ରସ୍ତୁତ ହୋଇବା ଧର୍ମ । ୧୧ ।

ଘର ଲୁଗା ପର    ଆଦାନ ପ୍ରଦାନ
ବଜେଟରେ ପାଉ ସ୍ଥାନ,
ଆନନ୍ଦିତ ହୋଇ    ଆନନ୍ଦ ଦେବାରେ
କୁଣ୍ଠିତ ନ ହେଉ ମନ । ୧୨ ।

ଆଦାନ ପ୍ରଦାନ    ପ୍ରଭାବ କେବଳ
ନୁହେଁ ବନ୍ଧୁ ବାନ୍ଧବରେ,
କୌଣସି ସମ୍ବନ୍ଧ    ହୁଏ ନା ମଧୁର
ଦିଆ ନିଆଟି ନଥିଲେ । ୧୩ ।

ଅନ୍ୟ ସମ୍ବନ୍ଧର    କଥା ଦୂରେ ଥାଉ
ବାପ ପୁଅ କଥା ଦେଖ,
ଧନୀ ବାପ ପରି    ନିର୍ଦ୍ଧନ ବାପ କି
ପୁଅଠୁ ଲଭଇ ସୁଖ ? । ୧୪ ।

ଆଦାନ ବିହୀନ    ପ୍ରଦାନ ନାଶଇ
ସରଳ ଭାବ ମନର,
ଦୋଷ ଗୁଣ ଏଥେ    ବିଚାର କରିବା
ନୁହଁଇ କି ଅବାନ୍ତର ? । ୧୫ ।

ନୁହେଁ ଗୁଣୀ ସେବେ    ପୁଅ ସେବୁଥାଇ
ସର୍ବଦା ବାପ ପୟର,
ଦୋଷ ନୁହେଁ ପୁଣି    ସରସତା ହୀନ
ହେଲେ ପୁଅ ବ୍ୟବହାର । ୧୬ ।

ଆଦାନ ପ୍ରଦାନ    ହୃଷ୍ଟମନ ଭାବରେ
କରଥାନ୍ତି ତାଙ୍କ କାମ,
ବାସ୍ତବତା କେବେ    ଏଡ଼ିବାର ନୁହେଁ
ହେଲେ ତା ଅସ୍ୱାଭାବିକ । ୧୭ ।

—●—

# ବୃତ୍ତି

କିଏ କରେ ରାଜନୀତି, କିଏ ବା ଚାକିରି,
କିଏ କରେ ବ୍ୟବସାୟ, କିଏ କୁଲିଗିରି । ୧ ।

କଳା, ସାହିତ୍ୟ ସାଧନେ କିଏ ହୁଏ ବ୍ରତୀ,
ଦେଶସେବା ପାଇଁ ପୁଣି କିଏ ଦିଏ ମତି । ୨ ।

ସବୁ ବୃତ୍ତି ଅଭିମୁଖ୍ୟ ଧନ ରୋଜଗାର,
ଧନ ବିନା ଚଳେ ନାହିଁ ଜୀବନ ସଂସାର । ୩ ।

ଆତ୍ମ ସେବା ମୂଳ ଲକ୍ଷ୍ୟ ସିନା ସଭିଙ୍କର,
ପରୋକ୍ଷେ ଉପୁଜେ ତହୁଁ ଦେଶର ବସ୍ତୁର । ୪ ।

ରାଜନୀତି, ଦେଶସେବା ବୃତ୍ତିରେ କି ଗଣା,
ମିଳେ କି ତହିଁରୁ କିଛି ଦରମା ପାଉଣା । ୫ ।
ଆମ ଜଣାରେ ଏପରି ନ ମିଳଇ କିଛି,
ତଥାପି କେତେକ ଏହା ନେଇଥାନ୍ତି ବାଛି । ୬ ।

ସଂସାର ତାଙ୍କର ଚଳେ କେଉଁ ପରକାର,
ରହସ୍ୟ ହେଲେ ହେଁ ତାହା ନୁହେଁ ଅଗୋଚର । ୭ ।
ତାଙ୍କର ସଂସାର କିନ୍ତୁ ସଭିଙ୍କ ଉପରେ,
ଧନ, ମାନ ପ୍ରତିପତ୍ତି ଠୁଳ ତାଙ୍କ ଦ୍ୱାରେ । ୮ ।
ଯେତେ ଶ୍ରେଷ୍ଠ ହେଉ, ତାର ନ ଥାଉ ପଦବୀ,
ଧନ, ମାନ ଅର୍ଜିବାରେ ଅଛି ତାର ଦାବି । ୯ ।

ଟାଉଟର, ଜାଲିଆତି ଅବା ଭଣ୍ଡାଭଣ୍ଡି,
ବିଭିନ୍ନ ଉପାୟେ ଥାନ୍ତି ଜନତାକୁ ଚଣ୍ଡି । ୧୦ ।
ସବୁଠାରେ ଥାଏ ତାଙ୍କ ଅବାଧ ପ୍ରବେଶ,
ଅଭିଷ୍ଟ ସାଧନେ ତାଙ୍କୁ ନୋହିଥାଏ କ୍ଳେଶ । ୧୧ ।
ପଦବୀ, କ୍ଷମତା ପ୍ରାପ୍ତ ହୋଇଥାଏ ଯିଏ,
ଧନ ଆଗମନ ତାର ଆପେ ଆପେ ହୁଏ । ୧୨ ।
ଏପରି ଯେ ରୋଜଗାର କରନ୍ତି ଥୋକାଏ,
ନୈତିକତା ସମର୍ଥନ ତା ପଛେ କି ଥାଏ ? । ୧୩ ।
ଗଣତନ୍ତ୍ର ପଦ୍ଧତିରେ ରାଜନୀତିଆଏ,
ବିଶିଷ୍ଟ ଲୋକ ହିସାବେ ସମ୍ମାନିତ ହୁଏ । ୧୪ ।
ଦେଶ ମାଲିକାନା ଅଛି ପରୋକ୍ଷେ ତାଙ୍କର,
ତାଙ୍କ କାର୍ଯ୍ୟ ରହେ ଉର୍ଦ୍ଧ୍ୱେ ନୀତି ନିୟମର । ୧୫ ।
ଆଦର୍ଶ ବନାନ୍ତି ସେ ତ ଅନ୍ୟ ସଭିଙ୍କର,
ଅମାପ ଲୋଟେ ସମାଜେ କଏ ରୋକିବାର । ୧୬ ।
ରାଜନୀତି ହୁଏ ଯହିଁ ରୋଜଗାର ପେଶା,
ଦୁର୍ନୀତି ସେଠାରେ ବାନ୍ଧେ ଚିରସ୍ଥାୟୀ ବସା । ୧୭ ।



# ଘର

( ପ୍ରତ୍ୟେକ ଲୋକ ବାସୋପଯୋଗୀ ଘରଟିଏ କରିବା ଉଚିତ୍ )

ବାପ ମାଆ କୋଳେ — ଜନମିଣ ଶିଶୁ
କ୍ରମଶଃ ହୁଅଇ ବଡ଼,
ବାହାଘେରା ହୋଇ — ଘରଣୀ ସନ୍ତାନ
ଧରି କରଇ ସଂସାର । ୧ ।

ଯେଉଁ ଘରେ ସିଏ — ଜନମିଣ ଥିଲା
ସେ ଘର ନ ହୁଏ ଆଜ,
ବାପ ଉପଯୋଗୀ — ଜୀର୍ଣ୍ଣଶୀର୍ଣ୍ଣ ପୁଣି
ଭାଇ ବଣ୍ଟାଘର ଦାଉ । ୨ ।

ବାପ ତ ନ କରେ — ପୁଅ ପାଇଁ ଘର
ପୁଅ କରେ ତାର ଘର,
ଯେତେ ପୁଅ ସେତେ — ଘର ହୋଇବାଟି
ରହିଛି କଥା ଆମର । ୩ ।

ଗୃହକର ଜୀବନ — ଭଡ଼ାଘରେ କଟେ
ଗୃହକର ମରଣ ଗଲେ,
ଭଡ଼ା ଦେଇ ଭଡ଼ା — ଘରେ ରହିବା ତ
ସମ୍ଭବ ନ ଥାଏ ଭଲେ । ୪ ।

ଦେଖ ସେ ଅବସ୍ଥା ବେଳ ଥାଉଁ ଥାଉଁ
ନ କରିବ ଯେବେ ଯତ୍ନ,
ଗୃହକୁ ସଞ୍ଚିଲେ ବାସ ଅଭାବରେ
ହେଉଥିବ ଧନ୍ଦବାନ୍ଧ । ୫ ।
ଜୀବନ ଧାରଣ ପାଇଁ ଖାଦ୍ୟ ଲୁଗା
ଲୋଡ଼ା ହୁଅଇ ଯେପରି,
ଦେହ ସାଇତିବା ପାଇଁ ବର୍ଷ୍ଣୂଏ
ଘର ଲୋଡ଼ା ସେହିପରି । ୬ ।
ସଂସାରୀ ମାନବେ ଅନୁଭବ ଏହା
ନିଜ ଶକ୍ତି ଅନୁଯାୟୀ,
କୁଡ଼ିଆ ହେଉ କି କୋଠା ଘର ହେଉ
ଘରଟିଏ କରିଥାଇ । ୭ ।
ଯେଉଁ ଅବିବେକୀ କରିବାରେ ଏହା
ଅସମର୍ଥ ହୋଇଥାଇ,
ପୂର୍ବଙ୍କ ତାଙ୍କ ଘରେ ଆଶ୍ରୟ ଖୋଜିବା
ଛଡ଼ା ଅନ୍ୟ ବାଟ ନାହିଁ ।
ବାସର ସ୍ଥିରତା ନ ଥାଏ ଯାହାର
ଯାଯାବର ତାକୁ କହି,
ସଂସାର ବିରାଗୀ ସନ୍ନ୍ୟାସୀ ପରିଏ
ଏଠି ସେଠି ଭ୍ରମି ଥାଇ । ୯ ।
ଆପଣା ଲୋକ ବି ଖୋଜି ଲୋଡ଼ା ବେଳେ
ତାହାକୁ ପାଆନ୍ତି ନାହିଁ,
ଦୂର ଦୂରନ୍ତରୁ ଚିଠି ପତ୍ର ମଧ୍ୟ
ତାହାକୁ ମିଳଇ ନାହିଁ । ୧୦ ।
ବାସହୀନ ହେଲେ ସମାଜ ମର୍ଯ୍ୟାଦା
ଆପେ ଆପେ ଲୋପ ହୋଇ,
ଅସ୍ଥାୟୀ ରହଣି ଯୋଗୁ ଅନ୍ତରଙ୍ଗ
କାହାରି ହୁଅଇ ନାହିଁ । ୧୧ ।

ବାସ ଅନୁସାରେ ସାମାଜିକ ସ୍ଥିତି
ହୋଇଥାଏ ଉପଲବ୍ଧ,
ଆଜି ଯାହା ଆଜି ବାସ ଯେବେ ନାହିଁ
ସବୁ ତା ପାଇଁ ନିଷିଦ୍ଧ । ୧୨ ।

ଏପରି ଅପଟୁ ଲୋକ ସମାଜରେ
ଅଛନ୍ତି ଅନେକ ରହି,
ବାସ ବିନା ତାଙ୍କ ଦମ୍ଭ ମାତ୍ର ଭାବ
କଥାରେ ନୁହିଁଇ କହି । ୧୩ ।



# ଆତ୍ମଶୁଦ୍ଧି

( ପ୍ରତିଷ୍ଠିତ ଲୋକର କଥା ଅନ୍ୟମାନେ ବିନା ବିଚାରରେ ଗ୍ରହଣ କରିଥାନ୍ତି । )

କଥାପଦେ ଭଲମୂର୍ଖ
ହୋଇଲେ ବାହାର,
ସେବା କରନ୍ତି ତାହାକୁ
ନ କରି ବିଚାର । ୧ ।

ଭଲ ମୂର୍ଖ ବୋଲି ଆଗୁ
ହୋଇଥିବ ଜଣା,
ନ ହେଲେ ଭଲ କଥାବି
ହୋଇଯିବ ବଣା । ୨ ।

ମନ୍ଦ ହୋଇ ଭଲ କଥା
କହିବ ନ ଶୋଭଇ,
ମନ୍ଦ ମୂର୍ଖ ବୋଲି ତାହା
ମନେ ଗଣା ହୋଇ । ୩ ।

ଆମର ଏ ପରମ୍ପରା
ସତ ସଦା କାଳେ,
ଭାରତର କଥା ଏକ
ଅଛି ଏହା ମୂଳେ । ୪ ।

କୃଷ୍ଣ ପ୍ରବେଚନା ବଳେ
ଧର୍ମ ଯୁଧିଷ୍ଠିର,
ମିଛ ବାର୍ତ୍ତା ଜଣାଇଲେ
ଦ୍ରୋଣେ ହେଲା ଜାନ । ୫ ।

ନର ବା ଗୁଞ୍ଜର ବୋଲି
ଅଶ୍ୱତ୍ଥମା ହତ,
ଯୁଧିଷ୍ଠିର ଭାଷେ ହୋଇ
ଦ୍ରୋଣେ ଶଙ୍କିତ । ୬ ।

ଶଙ୍ଖନାଦରେ 'ଗୁଞ୍ଜର'
ନ ହୋଇଲା ଶ୍ରୁତ,
ନର ଅଶ୍ୱତ୍ଥମା ହତ
ଦ୍ରୋଣ ଘେନେ ଚିତ୍ତ । ୭ ।

ପୁତ୍ର ଶୋକେ ଶରତ୍ୟାଗ
କଲେ ଦ୍ରୋଣ ରଥୀ,
ଭଲ ମୁଖ ବୋଲି ସିନା
ମିଛ ହରେ ମତି । ୮ ।

ଦ୍ରୋଣ ଜାଣେ ଅଶ୍ୱତ୍ଥମା
ଅଟଇ ଅମର,
ମାତ୍ର ଯୁଧିଷ୍ଠିର ଭାଷେ
ତା ମୃତ୍ୟୁ ଖବର । ୯ ।

ଅଶ୍ୱତ୍ଥମା ଅମରତା
ମିଛ ହୋଇପାରେ,
ମିଥ୍ୟା ରହି ନ ପାରଇ
ଯୁଧିଷ୍ଠି ଭାଷାରେ । ୧୦ ।

ଯୁଧିଷ୍ଠିର ସଦା ଖ୍ୟାତ
ସତ୍ୟବନ୍ତ ବୋଲି,
ମିଛ ଭାଷିଲେ ବ ତାହା
ସତ୍ୟରୂପେ ଚଳି । ୧୧ ।
ଶିକ୍ଷା ଏଥୁ ନିଅ ଭାଇ
ଦୁଃଖ ଆଗ ଭଲ,
ଭଲ ଦେଲେ ଶୁଣ କଥା
ଘେନନ୍ତେ ସକଳ । ୧୨ ।



# ଅନ୍ତ୍ୟେଷ୍ଟି କ୍ରିୟା

( ଶବଦାହ ଓ ପିଣ୍ଡଦାନ କ୍ରିୟା ପୁତ୍ରର କର୍ତ୍ତବ୍ୟ । )

ମୃତ ହେଲେ ଲୋକ ଶରୀର ହୋଇଯାଏ ଅଚଳ,
ଅଶରୀରୀ ହୋଇ ରହେ 'ମୁଁ' 'ସୂକ୍ଷ୍ମ' ହୋଇଣ ମେଳ । ୧ ।

ଯାବତ ନୂତନ ଶରୀର, ନ ହୋଇଛୁ ପ୍ରାପତ,
ଗତ ପଦାର୍ଥରେ ନଜର, ରହେ ନୁହଁ ଚକିତ । ୨ ।

ଯେଉଁ ଶରୀରଟି ରକ୍ଷିତ, ହେଉଥିଲା ଯତ୍ନରେ,
ଏବେ ପଡ଼ି ହେବ ଦୁର୍ଗତ, ପୁଣି ଶ୍ୱାନ ଶୃଗାଳେ । ୩ ।

ଭକ୍ଷିବେ ମଶାଣି ପଦାରେ, ହୋଇବେ ଆନନ୍ଦିତ,
ଅଶରୀରୀ ଭାବେ ଦେଖି 'ମୁଁ' ନ ହେବ କି ଦୁଃଖିତ । ୪ ।

ଏଡ଼ାଇବା ପାଇଁ ଏ ଦୁଃଖ, ଅଛି ଶାସ୍ତ୍ର ନିୟମ,
ମୃତ୍ୟୁ ପରେ ପରେ ଶବକୁ, କରିଦେବ ଦହନ । ୫ ।

ପୁତ୍ରରୁ ଅଧିକ ଘନିଷ୍ଠ, ଅବା କିଏ ହୋଇବ,
ପୁତ୍ରସମ ଆନ୍ତରିକତା, ପୁଣି କାହାର ଥିବ । ୬ ।

ଦାହ କ୍ରିୟା ଏଣୁ ହୋଇଛି, ନ୍ୟସ୍ତ ପୁତ୍ର ଉପରେ,
ଏ ପାଇଁ ଜୀବନେ ପୁତ୍ରେକ, ଇଚ୍ଛି ଥାଆନ୍ତି ନରେ । ୭ ।

ଦହନ କ୍ରିୟାରେ ଜ୍ଞାତିଏ, ହୋଇଥାନ୍ତି ସହାୟ,
ଭୋଜିଭାତେ ତାଙ୍କୁ ସନ୍ତୁଷ୍ଟ, କରିବା ବିଧେୟ । ୮ ।

ନୂତନ ଶରୀର ଧରିବ, ଅବା ହୋଇଛନ୍ତି ମୁକ୍ତ,
ବିଗତ ଆତ୍ମାର ଅବସ୍ଥା  ନୁହେଁ ଆମକୁ ଜ୍ଞାତ । ୯ ।
ଅନୁମାନ ତିନି ପୁରୁଷ, କରୁ ତାହାର ସେବା,
ବିଗତ ଆତ୍ମାର ସନ୍ତୋଷ, ହୁଏ ଏଥିରେ ଅବା । ୧୦ ।
ପିଣ୍ଡଦାନ କରୁ ବର୍ଷକେ, ଥରେ ହୋଇ ପବିତ୍ର,
ଆମକୁ ଯା ହୁଏ ବରଷେ, ତାଙ୍କୁ ଦିନଟି ମାତ୍ର । ୧୧ ।
ଶ୍ରଦ୍ଧା ନିଷ୍ଠା ସହ ଯେ ପୁତ୍ର, ଏହା କରେ ପାଳନ,
ପିତୃ ଆଶିର୍ବାଦ ଲଭକୁ, ସିଏ ହୁଏ ଭାଜନ । ୧୨ ।
ପଞ୍ଚଯଜ୍ଞ ମଧ୍ୟେ ଏ କାମ, ହୋଇଥାଏ ଗଣନ,
ପଞ୍ଚଶୂନା ପାପ ବିନାଶ, ହୁଏ କଲେ ପାଳନ । ୧୩ ।



# ଉପାଧି

( ଉଚ୍ଚ ଆସନରେ ଥିଲେ ବା ଶ୍ରେଷ୍ଠ ସମ୍ପର୍କିତ ହୋଇଥିଲେ ଲୋକେ ନନ୍ଦନ
ଭାବ ବହନ କରିଥାଆନ୍ତି । ଏହା କଣ ଠିକ୍ ? )

ପଙ୍କରୁ ଜାତ ପଦ୍ମ ମାତ୍ର ପବିତ୍ର,
ବିଷ୍ଣୁ ସେବାରେ ଲାଗେ ଧନ୍ୟ ତା ଗାତ୍ର । ୧ ।
ସୁଷମାର ପ୍ରତୀକ ପଦ୍ମ ଅଟଇ,
ତୁଳନା ତା ସଙ୍ଗରେ କେହି ନୁହଁଇ । ୨ ।
ତା ନାମ ଯୋଗ ହୁଏ ଯାହା ସଙ୍ଗରେ,
ସୁନ୍ଦର ବୋଲାଏ ସେ ମହୀ ମଣ୍ଡଳେ । ୩ ।
କବି ମାନସେ ଯାହା ହୁଏ ସୁନ୍ଦର,
ଭାଷା ନ ଜାଣି ଯୋଡେ ନାମଟି ତାର । ୪ ।

ସ୍ଥାନରୁ ଜନ୍ମ ତାର, ନ ଦେନେ ମନ,
ଗୁଣ ସେ ପାଇଁ ତାର ନୁହେଁ ନନ୍ଦନ । ୫ ।
ଲୋକ ଜୀବନ ମାତ୍ର ଭିନ୍ନ ପ୍ରକାର,
ଉତ୍ପତ୍ତି କଥା ହୁଏ ଆଗ ବିଚାର । ୬ ।
ଲକ୍ଷପତି ପିତା ସେ, ଥିଲା ବକାଳ,
ରକ୍ଷୀ ମୁଖ୍ୟ ମାତ୍ର ଥିଲା ଜଗୁଆଳ । ୭ ।
ବିଚାର ପତି ମାତ୍ର ବାପ ଚପ୍ରାଶି,
ଅଭିଜ୍ଞ ପିତା ସେ ପଢିନି ଇଂଲିଶି । ୮ ।

ଏପରି ବସ୍ତ୍ରରେ ଉଚ୍ଚ ଆସନ,
ଲଭି ଥିଲେ ବି ହୀନ ହୁଏ ସମ୍ମାନ । ୯ ।
ଯେଉଁଠୁ ଉତପତ୍ତି ସେହି ଭାବରେ,
ଦେଖିବାକୁ ଆଗ୍ରହ ଜାଗେ ମନରେ । ୧୦ ।
ଆସନ ଅନୁଯାୟୀ ମାନ୍ୟ ହୁଅନ୍ତି,
ମାତ ଉତ୍ପତ୍ତି କଥା ମନେ ବହନ୍ତି । ୧୧ ।
ବିବାଦ ଉପୁଜିଲେ ଉତ୍ପତ୍ତି ଧରି,
ଭର୍ତ୍ସନା କରିବା ସବୁରି ରୀତିର । ୧୨ ।
ଉଚ୍ଚ ଉତ୍ପତ୍ତି ପୁଣି ଉଚ୍ଚ ଆସନ,
ତାଙ୍କ ସରସ ଭାବ ନୁହେଁ କଥନ । ୧୩ ।
ସମ ଆସନ ମାତ୍ର ଉତ୍ପତ୍ତି ଭିନ୍ନ,
ଉଚ୍ଚର ଉଚ୍ଚ ଭାବ ମାତ୍ରଟି ଗୌଣ । ୧୪ ।
ଘଟଣା ଏକ ଅଛି ଏହି ପ୍ରସଙ୍ଗେ,
ଭାବିଲେ ଯାହା ମନେ ସରମ ଜାଗେ । ୧୫ ।
ଗରିବ ଅପାଠୁଆ ମଳିନ ବେଶ,
ବାପକୁ ବନ୍ଧୁ ମେଳେ ଦେଖି ବିରସ । ୧୬ ।
କହିଲା ଗ୍ରାମ ଲୋକ ଏ ଅଟେ ମୋର,
ଆସନ୍ତି ବିପଦରୁ ହୋଇଲା ପାର । ୧୭ ।
ଉଦ୍ଧତ ପଣର ଏ ନୁହେଁ ସୂଚନା,
ଇଚ୍ଛା ଉତ୍ପତ୍ତି କଥା ରହୁ ଅଜଣା । ୧୮ ।
ଭାବିଲା ବାପ ହେଲେ ଏ ହୀନ ଲୋକ,
ଉଚ୍ଚ ସମ୍ମାନେ ନିଶ୍ଚେ ଲାଗିବ ପୋକ । ୧୯ ।
ଉଚ୍ଚ ପଦାଧିକାରୀ ଉଚ୍ଚ ପାଠୁଆ,
କି ମୂଲ୍ୟ ଯଦି ବାପ ମଳିମୁଣ୍ଡିଆ । ୨୦ ।
ଉଚ୍ଚ ପଦର ଯେଉଁ ଉଚ୍ଚ ଗୌରବ
ଏ ଲୋକ ବାପ ହେଲେ ମ୍ଲାନ ହୋଇବ । ୨୧ ।
ଭାବି ଏପରି ମନେ ଉତ୍ତର ଦେଲା,
ବାପକୁ ଗ୍ରାମ ଲୋକ ବୋଲି କହିଲା । ୨୨ ।

କଣର ସିଏ ବଡ଼ ବାପଟି ହୀନ,
ପଦବୀରେ ହୁଏ ଏହା କି ଓଜନ ? ।୨୩।
ଉତ୍ପତ୍ତିର ପ୍ରଭାବ ଏହି ପ୍ରକାର,
କାହାର ମନୁ ଇଏ ନୁହେଁ ବାହାର ।୨୪।
ଏଥି ପାଇଁ ଉତ୍ପତ୍ତି ରହେ ଗୋପନ,
ପ୍ରକାଶ କରିବାକୁ ଗୁହେଁନ ମନ ।୨୫।
ଭାଗ୍ୟବନ୍ତ କି ପଦ୍ମ ପରି ମାନବ,
ଉତ୍ପତ୍ତିକୁ ଉପେକ୍ଷି ଗୁଣ ଗାଇବ ? ।୨୬।
ଉତ୍ପତ୍ତି ଯାହା ଥାଉ, ଏବ ଆସନ,
ଲଭନ୍ତି ପଦ କରି କେତେ ଯତନ ।୨୭।
ନିଜ ଶକ୍ତିର ତାହା ଦିଏ ସୂଚନା,
ହୀନ ଉତ୍ପତ୍ତି ପାଇଁ କମ୍ପା ଭାବନା ।୨୮।
ହୀନ ଉତ୍ପତ୍ତି ପାଇଁ ହୀନ ମନ୍ୟତା
ବହନ କରିବାଟି ନୁହେଁ ବିଜ୍ଞତା ।୨୯।



# ବାପପୁଅ

( ଧର୍ମନୀତ, ପରମ୍ପରା, ଚରିତ୍ର ଗଠନ ଆଦି ଶିକ୍ଷାର ଅଭାବରୁ ବାପପୁଅ ସମ୍ପର୍କର ସ୍ୱାଭାବିକତା ବ୍ୟାହତ ହୋଇଥାଏ । )

ବାପ ଇଚ୍ଛେ ପୁଅ ହେଉ
　　　　ଅତି ଗୁଣବନ୍ତ,
ଉଚ୍ଚ ପଦବୀ ଲଭିଣ
　　　　ହେଉ ସୁବଖ୍ୟାତ ।୧।

ତା ସଙ୍ଗରେ ଇଚ୍ଛା କରେ
　　　　ବାଧ୍ୟ ହେଉ ପୁତ୍ର,
ସବୁମନ୍ତେ ହେଉ ପୁତ୍ର
　　　　ତାର ଅନୁଗତ ।୨।

ମାତ୍ର ଏ ଦୁଇ ଇଚ୍ଛାର
　　　　ନ ହୁଅଇ ମେଳ,
ବଡ ହେଲେ ପୁଅ, କଥା
　　　　ଧରେ ଗୋଳମାଳ ।୩।

ବାପ ଠାରୁ ପୁଅ ହେଲେ
　　　　ଅଧିକ ପାଠୁଆ,
ଉଚ୍ଚ ପଦବୀରେ ରହି
　　　　ଅରଜିଲେ ନାଆଁ ।୪।

ବାପ ପୁଅ ଭାବ ଯେଠି
ହୋଇଥାଇ କ୍ଷୁଣ୍ଣ,
ଭାବରେ ଅନେକ ସୃଷ୍ଟି
ହୋଇଥାଏ ଜାଣ । ୫ ।

ପୁଅର ନୁହେଁ ପସନ୍ଦ
ବାପର କଥାକୁ,
ବାପ ବି ଭରସି କଥା
କହେନା ତାହାକୁ । ୬ ।

ସହଜ ସରଳ ଭାବ
ହୋଇଯାଏ ଦୂର,
ଚକାଣ ଲଗାଇ ମାପ-
ଚୁପ କାରବାର । ୭ ।

ସମ୍ବଳ ନ ଥାଇ ବାପ
ଯଦି ନ ଦେଲେ ଧନ,
ମନର ଭାବ ବୁଝଇ
ଅଧିକ କଠିନ । ୮ ।

ଅର୍ଜନର କସ୍ତଦଂଶ
ଏ ହଗେ ଖରଚ,
ସ୍ୱଭାବେ ଘଟାଇ ଥାଏ
ହୃଦ୍‌ଭେଗେ ସଙ୍କୋଚ । ୯ ।

ମନର ସରାଗ ନଷ୍ଟ
ହୋଇଥାଏ ଜଣା,
ଜଚ ଅସୁ ଯୋଗୁ ତାହା
ନ ପଡ଼ଇ ଜଣା । ୧୦ ।

ଅଛନ୍ତି ଅନେକ ପୁଅ
ତ୍ୟାଗ ଉନ୍ମୁଖ,
ବାପ ପାଇଁ ତ୍ୟାଗ
ନ କରନ୍ତି ନିଜ ସୁଖ । ୧୧ ।

ବଡ଼ ହେଲେ ପୁଅ ମାନ
ଲଭିଥାଏ ବାପ,
ତିକ୍ତତା ଭିତରେ ଥାଏ
ସ୍ୱାଦର ପ୍ରଲେପ । ୧୨ ।

ବିଦ୍ୟା ଓ କର୍ମରେ ପୁଅ
ବାପଠୁ ନିକୃଷ୍ଟ,
ହେଲେ ସମ୍ପର୍କ ହୁଅଇ
ଅତିଶୟ ତିକ୍ତ । ୧୩ ।

ପୁଅ ଅଯୋଗ୍ୟତା ବାପ
ସହି ନ ପାରଇ
ଅଶାନ୍ତ ବହ୍ନିରେ ସଦା
ଦଗ୍ଧ ହୋଇଥାଇ । ୧୪ ।

ପୁଅ ଗୁଣ କର୍ମ ବାପେ
ହୁଏ ନାଁ • ପସନ୍ଦ,
ବିଭିନ୍ନ ପ୍ରକାରେ ସଦା
ସୃଜଥାଏ ଦ୍ୱନ୍ଦ୍ୱ । ୧୫ ।

ବେଳେବେଳେ ପ୍ରତିକ୍ରିୟା
ହୁଏ ବିଷମୟ,
କିଏ ଦାୟୀ ସେଥିପାଇଁ
କେ କରିବ ଥୟ । ୧୬ ।

ସାନ ଅବା ଅବଗୁଣ
ହେଲା ଯଦି ପୁଅ,
ବହିଥାଏ ଏହିପରି
ଅଶାନ୍ତର ସୁଅ । ୧୭ ।

ବାପ ପୁଅ ସମ୍ବନ୍ଧରେ
ରହିଥାନ୍ତି ଯହିଁ,
ମଧୁର ନ ହେଲେ ମଧ
ତିକ୍ତତା ନ ଥାଇ । ୧୮ ।

ଅତି ସାଧାରଣ ସେଠି
ସମ୍ପର୍କ ହୁଅଇ,
ହସ କନ୍ଦା କାନ୍ଦ କଣ୍ଟ
ବାଣ୍ଟ ନ ହୁଅଇ । ୧୯ ।

ବାପ ପୁଅ ସମ୍ପର୍କର
ଏ ତିନ ଅବସ୍ଥା,
କଳ୍ପିତ ନୁହଇ ଏଥେ
ଅଛି ବାସ୍ତବତା । ୨୦ ।

କୌଣସି ଅବସ୍ଥା ନୁହେଁ
ସମ୍ପର୍କଶୂନ୍ୟ ମୁକ୍ତ,
ବଡ଼ ସାନ ଅବା ସମ
ସର୍ବେ ଶୃଙ୍ଖଳିତ ଯୁକ୍ତ । ୨୧ ।

ବିଦ୍ୟା ପଦାର୍ଥ ବସ୍ତୁର
ଏଥେ ନ ଖୋଜଇ,
ବଡ଼ ସାନ ଅବା ସମ
ଅବାନ୍ତର ହୋଇ । ୨୨

ବାପ ସଙ୍ଗେ ପୁଅର କି
ତୁଳନା ହୁଅଇ,
ତୁଳିଲେ ତାହାଠୁ ବଳି
ଭ୍ରମ ଅନ୍ୟ ନାହିଁ । ୨୩

ଡାଳ କି ହୁଅଇ କେବେ
ମୂଳ ସମକକ୍ଷ,
ନାଡ଼ ଟେକିଲେ କି ପତ୍ର
ରହିପାରେ ସ୍ୱଚ୍ଛ ? । ୨୪ ।

ଗଢ଼ିଲି ପୁଅକୁ ଦେଇ
ପ୍ରାଣଭରା ସ୍ନେହ,
ଗଢ଼ା ସରିଲେ ଅସାର
ଏହା କେଉଁ ନ୍ୟାୟ ? । ୨୫ ।

ଗୁରୁସମ ପୂଜ୍ୟ ପିତା
ସଦା ସନ୍ତାନର,
ନ ହି ବିଚ୍ୟୁତ ଏଥିରେ
ଅଧର୍ମ ବିସ୍ତର, । ୨୬ ।

ବାପ ଗୁଣ କର୍ମ ନୁହେଁ
ପୁତ୍ରର ବିଷୟ,
ପୁତ୍ରକୁ ଯେ ଗୁଣୀ କଲା
ସେ କେଡ଼େ ପାମର । ୨୭ ।

ବାପସମ ହିତାକାଙ୍କ୍ଷୀ
ଅନ୍ୟ କେହି ନାହିଁ,
ସୁଖୀ ହିଏ ଯିଏ ବାପ
ଆଶିର୍ବାଦ ପାଇ । ୨୮ ।

ପିତୃଆଜ୍ଞା ପାଳି ରାମ
ଗଲେ ବନବାସ,
ପିତୃଆଜ୍ଞା ପାଳି ପର୍ଶୁ
ମାତା କଲେ ନାଶ । ୨୯ ।

ଭଲମନ୍ଦ ବିଚାର ତ
ନ କଲେ ସେମାନେ,
ଧର୍ମଜ୍ଞାନେ ପାଳି ସୁଖୀ
ହେଲେ ଅବସାନେ । ୩୦ ।

ଆମର ଏ ଶାସ୍ତ୍ର କଥା
ଜଣା କ ସଭିଙ୍କି,
ଜଣାଥିଲେ ପାଳନ ବା
ନ ହୁଏ କାହିଁକି ? । ୩୧ ।

ପିତୃ ଆଜ୍ଞା ପାଳନ କା
ହୁଏ ଏ ଯୁଗରେ,
ବରଂ ପୁତ୍ର ଆଜ୍ଞା ବାପ
ଶିରୋଧାର୍ଯ୍ୟ କରେ । ୩୨ ।

ଆମ ପରମ୍ପରା ଆମେ
ନ କରୁ ପାଳନ,
ପରସ୍ପରର ଦୋଷ ଦେବା-
ବୃତ୍ତି କରୁ ଧ୍ୟାନ । ୩୩ ।

ସରସ ମଧୁର ଭାବ
ଅଟେ ଯାର ଭିତ୍ତି,
ବିରାଗ ବିଦ୍ୱେଷ ସେଠି
କରଇ ଵସତି । ୩୪ ।

ଯାହା କରୁ ବିଲକ୍ଷଣ
ହୁଏ ଅନୁଭୂତ,
ଧର୍ମଜ୍ଞାନ ଅଭାବରୁ
ହୁଏ ତାହା ଜାତ । ୩୫ ।

ଶିକ୍ଷା ସଂସ୍କାର ଆମର
ହୁଏ ବାରମ୍ବାର,
ଧର୍ମ ଶିକ୍ଷା ପାଇଁ କେବେ
ନ ହୁଏ ବିଚାର । ୩୬।

ଚରିତ୍ର ଗଠନ ପାଇଁ
ନ ଥାଏ ମନ୍ତ୍ରଣା,
ଯିଏ ଯାହା ହେଲା ହେଉ
ନାହିଁ କଟକଣା । ୩୭ ।

ବିଷୟ ଅର୍ଜନ ଆଉ
ଭୋଗର କୌଶଳ,
ଶିଖାଇବା ହେଲା ଯେଉଁ
ଶିକ୍ଷାର ସମ୍ବଳ । ୩୮ ।

ସେଥିରୁ ଯେଉଁ ଭାବଟି
ଜନମିବା କଥା,
ନୁହେଁ ତାହା ଭିନ୍ନ, ଯାହା
ଘଟୁଛି ସର୍ବଥା । ୩୯ ।

# ଭବିଷ୍ୟତ

( ଭବିଷ୍ୟତ ଆଶା ଆଶଙ୍କାରେ ପ୍ରଭାବିତ ନ ହୋଇ ବର୍ତ୍ତମାନ ଅବସ୍ଥାରେ ଯାହା ଉଚିତ୍ ,ତାହା କର୍ତ୍ତବ୍ୟ । )

ଅତୀତ ବର୍ତ୍ତମାନକୁ
ଫେଣ୍ଟାଫେଣ୍ଟି କରି,
ଭବିଷ୍ୟତର ଯୋଜନା
ହୁଅଇ ତିଆରି । ୧ ।

ତାହା ସାଧିବାର ପାଇଁ
କରାଯାଏ କର୍ମ,
ଇପ୍‌ସିତ ଫଳ କି ସଦା
ହୁଅଇ ଆଗମ ? । ୨ ।

ଇପ୍‌ସିତ ଫଳଟି ଯେବେ
ନ ହେଲା ପ୍ରାପତ,
ଅଶେଷ ଦୁଃଖ ମନରେ
ହୋଇଥାଇ ଜାତ । ୩ ।

ନାନା କଳ୍ପନା ଜଳ୍ପନା
ଜାଗଇ ମନରେ,
ଲାଭ ନ ହୁଅଇ କିଛି
ଅନୁସନ୍ଧାନରେ । ୪ ।

ବେଳେ ବେଳେ ଅଘ୍ଟନକ
ଘଟଣା ଘଟଇ,
କୂଳ କିନାର ତାହାର
କିଛି ନ ମିଳଇ । ୫ ।

ବାରମ୍ବାର ବାଧା ପ୍ରାପ୍ତ
ହୋଇ ସବେ ନର,
ଭବିଷ୍ୟତ ଅନିଶ୍ଚିତ
ସାଧ୍ୟର ବାହାର । ୬ ।

ଅନିଶ୍ଚିତ ନୁହେଁ ତାହା
ଅଛି ସୁନିର୍ଦ୍ଦିଷ୍ଟ,
ରେଖ ରୂପ ରହେ ମାତ୍ର
ଆମକୁ ଅଜ୍ଞାତ । ୭ ।

ଭବିଷ୍ୟତ ଦ୍ୱାର ନୁହେଁ
ଆମକୁ ଉନ୍ମୁକ୍ତ,
ଫଳ କଳ୍ପନାରେ ଆମେ
ବୃଥା ହେଉ ତପ୍ତ । ୮ ।

ବେଳେ ବେଳେ ଶ୍ରମ କରି
ପାଉନାହୁଁ କିଛି,
ବେଳେ ବେଳେ ମିଳେ ସୁଖ
କେବେ ଯା ନ ଇଚ୍ଛି । ୯ ।

ଆମ ଜାଣିବାରେ ଆମେ
କରିନାହୁଁ ଦୋଷ,
ଦଣ୍ଡ କିନ୍ତୁ ହେଉଥାଉ
ହୋଇଣ ହତାଶ । ୧୦ ।

କଅଣ ମିଳିବ ଅବା
କିଛି ନ ମିଳିବ,
ସୁଖକର ହେବ ଅବା
ଦୁଃଖ ବଢ଼ିଯିବ । ୧୧ ।

ଯାହା ଆମ କଳ୍ପନାରେ
ହୁଅଇ ନଷ୍ଟପ୍ରାୟ,
ନୁହଁଇ ଉଚିତ ତାହା
କରିବା ଚିନ୍ତାପ୍ରାୟ ।୧୨।

ଯାହା ହେବା ପାଇଁ ଥିବ
ଅବଶ୍ୟ ହୋଇବ,
ରେଖ ରୂପ କଳ୍ପି କିମ୍ପା
ସନ୍ତାପ ଭୋଗିବ ? ।୧୩।

କଳ୍ପନାର ଅନୁରୂପ
ନ ହୋଇଲେ ଫଳ,
କପରି ତା ବ୍ୟର୍ଥ ହେବ
ଅଛି କି କୌଶଳ ? ।୧୪।

ଏଣୁ ଭବିଷ୍ୟତ ଚିନ୍ତା
ପରିହାର କର,
ଅତୀତର ବିଫଳତା
ମନରେ ନ ଧର ।୧୫।

ବର୍ତ୍ତମାନ ଅବସ୍ଥାରେ
ଯାହା ବି ଉଚିତ,
ବିବେକ ବିଗୃରେ ହୋଇ
ଥାଏ ସ୍ଥିରୀକୃତ ।୧୬

ଈଶ୍ୱରଙ୍କର ଦୟାରେ
ହୋଇ ଆସ୍ଥାବାନ,
ସମ୍ପାଦନ କରିବାରେ
ଦିଅ ମନ ଧ୍ୟାନ ।୧୭।

କର୍ମ ପଥେ ଦେଖାଦେଲେ
ବିପଦ ଆଙ୍କୋ,
ଭୁଲି ନ ଯାଅ ତହିଁରେ
ତ୍ୟାଗକର ଧକା । ୧୮ ।

ଆଶା ଯନ୍ଦ ନିରାଶାରେ
ହୁଏ ପରିଚେ,
ଆଙ୍କୋ କମ୍ପାଇଁ ହେବ
ଏଡ଼େ ସତ୍ୟବନ୍ତ ? । ୧୯ ।



# ଖୋସାମତି

( ଖୋସାମଦ ଗୁଣଗାନ ନୁହେଁ । ଉଦ୍ଦେଶ୍ୟ ସାଧନ ପାଇଁ ମନ ଭୁଲାଇବାର
ଏହା ଏକ ହୀନ କୌଶଳ । ଏଥିରେ ଭୁଲିଲେ ବିପଦ ନିଶ୍ଚିତ )

ଅନ୍ୟମୁଖୁ ସ୍ୱପ୍ରଶଂସା
ଶୁଣି ଉଲ୍ଲସେ ହିଆ,
ତନଖିରେ ବନେନି ମନ
ସତ କି ମିଛୁଆ ।୧।

ଭିଜିଯାଏ ମନ ତହିଁରେ
ବକ୍ତା ହୁଏ ବନ୍ଧୁ,
ବନ୍ଧୁ ପାଇଁ ଲୋଡ଼ା ହୋଇଲେ
ପାର ହୁଏ ସିନ୍ଧୁ ।୨।

ମନୁଷ୍ୟର ମନର ଏହା
ବଡ଼ ଦୁର୍ବଳତା,
ଧୂର୍ତ୍ତ ଲୋକେ କରି ଥାଆନ୍ତି
ତା ଉପଯୋଗିତା ।୩।

ଠେକା ଠେକ କରିଣ କଥା
କହନ୍ତି ଚତୁରେ,
ମନ ଭୁଲାଇ ନିଜ କାମ
ସାଧିଥାନ୍ତି ହେଳେ ।୪।

ଗୃହ୍ଣୁକାର ବନ୍ଧୁଙ୍କର
କଥାରେ ଏକ୍ସପର,
ପଡ଼ିଲେ ତମେ ଲୁପ୍ତହୁଏ
ନଜର ଗୃହୁର । ୫ ।

କ୍ଷମତା, ପ୍ରଭାବ ପୁଣି
ଧନ ଯେଉଁଠି ଥାଇ,
ସେ ଜାଗାମାନ ଏ ବୃତ୍ତିର
ଅଟେ କର୍ମଭୂଇଁ । ୬ ।

ଗୁଣଗାନ ପର ସିନା
ଦଣଇ ବାହାରକୁ,
ତ୍ରକୁତ ତାହା ଖୋସାମତ
ବୁଝାଅ ମନକୁ । ୭ ।

ଗୁଣ ଯଦ ବା ଅଛୁ କଛୁ
ଗାୟକ କ ଲୋଡ଼ା,
ପୁଷ୍ପର ସୁରଭ ସମ
ସ୍ୱତଃ ପବନେ ଉଡ଼େ । ୮ ।

ପ୍ରଶଂସାର ବାକ୍ୟ ଯଦ
କହଇ କେହ୍ଵ ଆସି,
ନୁହିଅ ର ରହ ତାହାକୁ
ଯାଅ ନାହିଁ ଭସି । ୯ ।

ସ୍ୱାର୍ଥାନ୍ୱେଷୀ ଖୋସାମତିଆ
ମଚ ତାଙ୍କ ଭବ,
କହବାକୁ ପଛାନ୍ତ ନାହିଁ
ଆମ୍ଭଡ଼ାକୁ ଆମ୍ଭ । ୧୦ ।

ତାହା ମଧ୍ୟ ସତ ବୋଲ
ହୋଇଣ ଥାଏ ଢେନା,
ଖୋସାମତରେ ବଶ ମନ
ତରକ ବୁଝେନା । ୧୧ ।

ବନ୍ଧୁତାର ଭାବ ତାଙ୍କର
ନ ଥାଏ ମୋଟରେ,
ବେଳ ଦେଖି ଖସି ଯାଆନ୍ତି
ଖୋଜିଲେ ନ ମିଳେ । ୧୨ ।

ଖୋସାମଦ କାରବାରରେ
ନିପୁଣ ଯେ ହୋଇ,
ମନ୍ଦ ନପ୍ରମାଦ ତାଙ୍କୁ
ଜଣା ନ ପଡ଼ଇ । ୧୩ ।

କୁରୁବଂଶ ଧ୍ୱଂସ କରିବ
ଶକୁନିର ପଣ,
ତାଙ୍କୁ ପରାମର୍ଶ ଦାତା
କରିଲେ କୁରୁଗଣ । ୧୪ ।

ମିଷ୍ଟ ବାକ୍ୟରେ ମୋହିଲା ସେ
କୁରୁଗଣ ମନ,
ଜାଣି ନ ପାରିଲେ ତାର
କପଟ ଆଚରଣ । ୧୫ ।

ତାର ପରାମର୍ଶ ନେଇ
କରିଲେ କର୍ମ ମାନ,
ବନ୍ଧୁ ସୋଦର ସବଂଶରେ
ହୋଇଲେ ନିଧନ । ୧୬ ।

ଖୋସାମଦର କରାମତି
ବୁଝି ଦେଇ ମତି,
ସାବଧାନ ହୁଅ ତାଙ୍କୁ
ଲୋଡ଼ାନାହିଁ ବିପତ୍ତି । ୧୭ ।

— ✻ —

# ନାରୀ ଉତ୍ଥାନ

( ବିବାହ ପଦ୍ଧତି ବଦଳିଗଲେ ସମାଜରେ ନାରୀର ପ୍ରାଧାନ୍ୟ ସ୍ୱତଃ ପ୍ରତିଷ୍ଠିତ ହେବ । ନାରୀମାନେ ବୋଧେ ଏଇଆ ଚାହାଁନ୍ତି । )

ଆଧୁନିକ ଯୁଗ ସ୍ୱାମୀ
ବୁଝନ୍ତିଲେ ଭାଇ ମନ ଦେଇକି । ଘୋଷା ।
ଝିଅ ଘରେଁ ଖାଲି ଘରଜା ହୋଇବ
ବୋହୂ ହେବା ପାଇଁ ମନ ନାହିଁକି,
ପୁଅ ସେହିପରି ଯୋଇଁ ହେଲ ପରେ
ପୁଅ ଭାବ ତାଠୁ ଗ୍ଲାନ୍ଥ ପାଏକି । ୧ ।
ଝିଅ ଇଚ୍ଛା ଯେବେ ନ ହୋଇବ ବୋହୂ
ଶାଶୁ ଘର ପିଏ ଯିବ କାହିଁକି,
ପୁଅ ଭାବ ଛାଡ଼ିଗଲେ ପୁଅଠାରୁ
ବଳେ ସେ ମୁହିଁବ ଶ୍ୱଶୁର ଟିକି । ୨ ।
ବାପଘରେ ରହି ବୋହୂ ନ ହୋଇଣ
ଘରଜାର ସୁଖ ଲଭ କରିକି,
ବାପ ମାଆ ବୋଝ ଛାଡ଼ିଲେ ପୁଅକୁ
ଯୋଇଁ ଭାବେ ସୁଖ କହି ହୁଏ କି । ୩ ।
ପୁଅ ଝିଅ ସବୁ ସୁଖୀ ହୋଇଗଲେ
ସମାଜରେ ଆଉ ଦୁଃଖ ରହିବ କି,
ବଧୂ ନିର୍ଯାତନା ବାପ ମାଆ ବୋଝ
ମୂଳପୋଛ ଆପେ ହେବ ନାହିଁକି । ୪ ।

ନାରୀର ଉତ୍‌ଥାନ ପାଇଁ ସଂସ୍କାରକ
 ହୋଇଥାନ୍ତି ସଦା ହାଇଁ ପାଇଁ କ,
ଏପରି ଭାବରେ ନାରୀର ଆସନ
 ଉପରକୁ ଉଠି ଯାଉ ନାହିଁକ ।୫।
ପୁରୁଷର ବଡ଼ପଣ କଷ୍ଟଦାୟ
 ହୋଇଥାଏ ସଦା ନାରୀ ଜାତିକ,
ବାପଘରେ ନିଜେ ବଡ ବୋଲାଇଣି
 ପୁଅକୁ କରାଉ ବସଉଠ୍‌କ ।୬।
ବିବାହ ପଦ୍ଧତି ବଦଳାଇ ଦିଅ
 ଆମର ମିନତି ଘେନା କରକ,
ପୁଅଧର ଝିଅ ଫେରୁ ବାପଘର
 ପୁଅ ଘରେ ବାହା କର୍ମ ସାରକ ।୭।
ପୁରୁଷ ପ୍ରଧାନ ସମାଜ ବୋଲଣ
 କୁହାଯାଉଥିଲା ଆଜ ଯାଏକ,
ହେଉ ଏବେ ନାରୀ ପ୍ରଧାନ ସମାଜ
 କାହାର ସେଥିରେ ଦୁଃଖ କାହିଁକ ।୮।
ବାପ ପୁଅ ନେଇ ଘର ହେଉଥିଲା
 ଶଶୁର ଯୋଗଁରେ ହେବ ଏଣିକ,
ଦୁଃଖୀ ହେବ ସିଏ ଝିଅ ଯାର ନାହିଁ
 ଝିଅ ପାଇଁ ଡାକ ହେବ ହରକି ।୮।



# ଆତ୍ମହତ୍ୟା

( ଆତ୍ମହତ୍ୟା ଦ୍ୱାରା ଶରୀର ଦୁଃଖ ଶେଷ ହୁଏ । ମାତ୍ର ଦୁଃଖ ମାନସିକ ସ୍ତରରେ ପୂର୍ବପର ରହେ । ଜୀବ ଅମର । ଦେହନାଶ ପରେ ମନଯନ୍ତ୍ର ପୁନର୍ଜନ୍ମ ପର୍ଯ୍ୟନ୍ତ ଅଶାନ୍ତ ହୋଇ ରହେ । )

ଜୀବନ ଧାରଣ ପାଇଁ ଖାଦ୍ୟ ବସ୍ତ୍ର
ବାସ ଆଦି ଦ୍ରବ୍ୟମାନ,
ଲୋଡ଼ଇ ମାନବ ଲଭିଲେ ସେ ସବୁ
ସୁଖୀ ହୁଏ ଲଭେ ମାନ । ୧ ।

ନ ପାଇଲେ ତାହା ମାନ ଦୂରେ ଥାଉ
ଭୋଗେ ଅଶେଷ କଷଣ,
ଶୂନ୍ୟ ଗୃହେଁ ହାତ ମାରଇ କପାଳେ
ଝରେ ଅଶ୍ରୁ ବର୍ଷଣ । ୨ ।

ଦ୍ରବ୍ୟ ସାଙ୍ଗେ ସ୍ନେହ ପ୍ରୀତି ବାନ୍ଧବତା
ଲୋଡ଼ା ହୋଇଥାଏ ପୁଣ,
ବସ୍ତୁବାଦୀ ଯୁଗେ ବସ୍ତୁହୀନ ଭାଗ୍ୟେ
ଏସବୁ ହୁଅଇ ସ୍ୱପ୍ନ । ୩ ।

ତେଲିଆ ମୁଣ୍ଡରେ ତେଲ ଢଳା ନିତି
ଚଳେ ଅବାରିତ ହୋଇ,
ତେଲିଆ ହୁଅଇ ଅଧିକ ତେଲିଆ
ଲୁଖୁରା ଲୁଖୁରା ଥାଇ । ୪ ।

ସୁଖୀ ପାଇଁ ସୁଖ          ଦୁଃଖୀ ପାଇଁ ଦୁଃଖ
ଖଞ୍ଜା ହୋଇଛି ଯେପରି,
ବିନା ଯତନରେ          ସୁଖୀ ଲଭେ ସୁଖ
ଦୁଃଖୀ ଦୁଃଖ ଯତ୍ନକରି । ୫ ।

ଅଭାବ ପୂରଣ          କରିଥାନ୍ତି ଲୋକେ
କରି ଅଧିକ ଅର୍ଜନ,
ଅର୍ଜନ କର୍ମରେ          ଅପାରଗ ହେଲେ
ଉପାୟ କି ଅଛି ଆନ ? । ୬ ।

ନିରୁପାୟ ହୋଇ          ଅବସ୍ଥା ଚାପରେ
ଧନର ବର୍ଜନର ପନ୍ଥା,
ଗୋଟେ ପରେ ଗୋଟେ          ଦ୍ରବ୍ୟତ୍ୟାଗ କରେ
ତଥାପି ନ ମିଳେ ଶାନ୍ତ । ୭ ।

ଜୀବନ ଗୃହଦା          ଅଟେ ଅକଳନ୍ତା
ନାହିଁ ତାର ଥଳକୂଳ,
ବର୍ଜନରେ ତାହା          ନୁହେଁ ସଙ୍କୁଚିତ
ଦୁଃଖୀକୁ କରେ ବିକଳ । ୮ ।

ନିରୁପାୟ ହୁଏ          ହତାଶା ବହ୍ନିରେ
ଦଗ୍ଧ ହୁଏ ତା ପରାଣ,
ନୂତନ କଳ୍ପନା          ରୂପାୟିତ ହୁଏ
ଲଭେ ପରି ପରିତ୍ରାଣ । ୯ ।

ମୂଳ ଥିଲେ ଯିନା          ଡାଳ ବାହାରିବ
ଦୁଃଖର ହେବ କାରଣ,
ମୂଳ ନ ବିନାଶି          ଡାଳ ଛେଦୁଥିଲେ
ଦୁଃଖ ନୁହେଁ ଅବସାନ । ୧୦ ।

ଭବ ଏ ପ୍ରକାରେ          ଜୀବନ ବିନାଶେ
ହୋଇଥାଏ ଅଗ୍ରସର,
ଜୀବନ ଯା ପାଇଁ          ଦୁଃଖର କାରଣ
ମୃତ୍ୟୁ ତାର ଶ୍ରେୟସ୍କର । ୧୧ ।

ଦ୍ରବ୍ୟ ହେଉ ଅବା ପ୍ରୀତି ବାନ୍ଧବତା
ଅପ୍ରାପ୍ତି ଜନିତ ଦୁଃଖ,
ପ୍ରେରଣା ଯୋଗାଏ ଆତ୍ମହତ୍ୟା ପାଇଁ
ସଂସାରେ ହୁଏ ବିମୁଖ । ୧୨ ।

ପ୍ରତିଷ୍ଠା ବି ନଷ୍ଟ ହେବା ଆଶଙ୍କାରେ
କେହି କେହି ଧନୀମାନୀ,
ବରି ନେଇଥାନ୍ତି ଆତ୍ମହତ୍ୟା ପଥ
ସହ୍ୟ ନୁହେଁ ମାନହାନି । ୧୩ ।

କେହି ଅବିବେକୀ ରୋଗ ଯନ୍ତ୍ରଣାରେ
ହୋଇଣ ଅତି କାତର,
ଆତ୍ମହତ୍ୟା କର୍ମେ ପ୍ରବୃତ୍ତ ହୁଅନ୍ତି
ଉପେକ୍ଷି ମାନବ ବିଗ୍ରହ । ୧୪ ।

ଏହିପରି ଦୁଃଖ ଅପମାନ ପୁଣି
ଯନ୍ତ୍ରଣାର ଅବସାନ,
ପାଇଁ ଆତ୍ମହତ୍ୟା କରିଥାନ୍ତି ଲୋକେ
ଯିା ଠାରୁ କି ଭ୍ରମ ଆନ ? । ୧୫ ।

ଆତ୍ମହତ୍ୟା କେବେ ନୁହଁଇଁ ସୁକର୍ମ
ନୁହେଁ ଦୁଃଖ ବିନାଶକ,
ତାତ୍ତ୍ୱିକ ଅର୍ଥରେ ଅଶରୀରୀ ହୋଇ
ଜୀବ ଭୋଗଇ ନରକ । ୧୬ ।

ଏଠାରେ ଯେପରି ଦୁଃଖ ଭୋଗୁଥିଲା
ଶରୀର ମନକୁ ନେଇ,
ଦେହ ନାଶ ପରେ ଦେହ ଦୁଃଖ ସରେ
ମାନସିକ ସ୍ତରେ ଥାଇ । ୧୭ ।

ମୃତ୍ୟୁ ଦ୍ୱାରା ହୁଏ ଶରୀର ବିନାଶ
ଜୀବ ତ ଅଟେ ଅମର,
ମୃତ୍ୟୁ ପରେ ଜୀବ 'ମନ' ସହିତରେ
ଧରେ ନୂତନ ଶରୀର । ୧୮ ।

ପୁନର୍ଜନ୍ମ ବୋଲି କୁହାଯାଏ ତାକୁ
ହୁଏ କେତେ କାଳ ପରେ,
ଜଣାତ ନୁହଁଇ ଆମକୁ ସେ କଥା
ଅଶରୀରୀ ମୃତ୍ୟୁ ପରେ । ୧୯ ।

ବଞ୍ଚିଥିଲେ ଅବା କର୍ମ, ଚେଷ୍ଟା ଦ୍ୱାରା
ଦୁଃଖ ହୋଇଥାନ୍ତା ଦୂର,
ଅଶରୀରୀ ହେଲେ କର୍ମ ଶକ୍ତିହୀନ
ଦୁଃଖ ବୃଦ୍ଧି ସିନା ସାର । ୨୦ ।

ଆତ୍ମହତ୍ୟା ଦ୍ୱାରା କର୍ମର ଆଧାର
ଶରୀର ନ କର ନାଶ,
ସଂସାର ସାଧନା କରି ଦୁଃଖହର
ଲଭିବେ ବଳାଅ ଆଶ । ୨୧ ।



# ଅହିଂସା

( ଅହିଂସା ପରମ ଧର୍ମ ଓ ମାନବୋଚିତ ପନ୍ଥା । )

ଜନ୍ମା ପିମ୍ପୁଡ଼ିଙ୍କୁ ଆହାର ଦିଅନ୍ତି
ଆମର ସମାଜେ ଲୋକେ,
ଆମର ସମାଜେ ରକ୍ତଲିପ୍ସୁ ଲୋକ
ପଶୁ ମାରି ମାଂସ ଖାଦକ । ୧ ।

ଆମର ସମାଜେ ମନ୍ଦିରରେ ପୁଣି
ଚାଲିଥାଏ ପଶୁବଳି,
ଭାବ ଉଗ୍ର ହେଲେ ବଡ଼ ସିଦ୍ଧି ପାଇଁ
ପଡ଼ିଥାଏ ନରବଳି । ୨ ।

ବିରାଗ, ବିଦ୍ୱେଷ ବିବାଦ, ମନ୍ତ୍ରଣା
ନେଲେ ଉଗ୍ରତାର ରୂପ
ହତ୍ୟା ସଂଘଟିତ ହୁଏ ଅପଲକେ
ରହେନାହିଁ ଭାଗମାପ । ୩ ।

ନରହତ୍ୟା ପୁଣି ଗୋହତ୍ୟା ଚାଲେ
ଆମର ସମାଜେ ଆଜି,
ରାଜନୀତିକ ଉଦ୍ଦେଶ୍ୟ ସାଧନ
ଅଟଇ ତାହାର ମଞ୍ଜି । ୪ ।

ଆତ୍ମହତ୍ୟା ପ୍ରତି ଝୁଙ୍କିଲେ ତାହାସଙ୍ଗେ
ନାହିଁ ତା ପାଇଁ ବାଧକ,
ଧନୀ, ମାନୀ, ଦୁଃଖୀ ଜ୍ଞାନୀ, ଅଜ୍ଞାନୀ ଏ
ସମସ୍ତେ ଏଥେ ପଥିକ । ୫ ।

ଖବର କାଗଜ ଦୃଷ୍ଟା ଆଜକାଲ
ହତ୍ୟା ସମ୍ବାଦରେ ଭରା,
ପଢ଼ନ୍ତୁ ସମସ୍ତେ ନ ଶୁଭଇ କାନ୍ତ
ଚିତ୍କାରର ଡାକରା । ୬ ।

ଜୀବନ ଧାରଣ ପାଇଁ ଅନ୍ୟ ଖାଦ୍ୟ
ଧରାରେ କି ନମିଳଇ,
ମାଂସାହାର ବିନା ଜୀବନ ଧାରଣ
ଅସମ୍ଭବ କି ହୁଅଇ ? । ୭ ।

ଶକ୍ତିବନ୍ତ ଆମେ କରୁ ପଶୁ ହତ୍ୟା
ଅଧିକାର କି ଅଛଇ,
ପଶୁମାରି ମାଂସ ଭକ୍ଷେ ଅଧିକାର
ବ୍ୟାଘ୍ର, ସିଂହ ଚିତା ପାଇ । ୮ ।

ପଶୁ ଯେ ମାରଇ ମାଂସ ଯେ ଭକ୍ଷଇ
ଉଭୟ ଦାୟୀ ଏ ପାଇଁ,
ମାଂସାହାର ଯଦି ଛାଡ଼ିବେ ସମସ୍ତେ
ପଶୁହତ୍ୟା ବନ୍ଦ ହୋଇ । ୯ ।

ପଶୁ ହତ୍ୟା ହେଉ ନର ହତ୍ୟା ହେଉ
ସବୁଠିତ ଜୀବ ହିଂସା,
ଉଦ୍ଦେଶ୍ୟ ତାହାର ମହତ କି ଅନ୍ୟ
କେ କରିବ ତା ମୀମାଂସା ? । ୧୦ ।

ଖାଦ୍ୟପାଇଁ ହେଉ ସିଦ୍ଧିପାଇଁ ହେଉ
ଅବା ଶତ୍ରୁନାଶ ପାଇଁ,
ହତ୍ୟାବେଳେ ଏଡ଼େ ନିଷ୍ଠୁର କପଟ
ମଣିଷ ହୋଇ ପାରଇ । ୧୧ ।

ବଗ୍ନୁର ବିବେକ ଦୟାଭାବ ତାର
କିଛି ନ ରହଇ ନାହିଁ,
ପାଷାଣ୍ଡ ପାଲଟେ ହତ୍ୟା ମୁହୂର୍ତ୍ତରେ
ଧର୍ମଜ୍ଞାନ ଲୋପ ହୋଇ ।୧୨।

ଯେତେ ଯେତେ ଧର୍ମ ମତ ରହିଅଛି
ଅହିଂସା ତା ମଧ୍ୟେ ଶ୍ରେଷ୍ଠ,
ଅହିଂସା ନ ପାଳି ଆଉ ଯାହା କଲେ
ନୋହିବ କେବେ ଧର୍ମିଷ୍ଠ ।୧୩।

ଜୀବବଳି ସମ ନିଷ୍ଠୁର କରମେ
ସିଦ୍ଧି କି ସତରେ ମିଳେ,
ଦେବତାମାନେ କି ଏତେ ଅବିବେକୀ
କୁକର୍ମେ ପ୍ରବୃତ୍ତ କରେ ? ।୧୪।

କୁସଂସ୍କାର ଛଡ଼ା ନୁହେଁ ଅନ୍ୟ କିଛି
ପ୍ରମାଦ ପ୍ରବଳ ହୋଇ,
ପଶୁବଳି ପୁଣି ନରବଳି ସମ
କୁକର୍ମେ ଆଗେଇ ନେଇ ।୧୫।

ମତବାଦ ମୀମାଂସା ପାଇଁ ଅନ୍ୟବାଟ
ନ ଯୁଟଇ କି ବୁଦ୍ଧିରେ,
କ୍ରୋଧ ବଶବର୍ତ୍ତୀ ହୋଇ ହତ୍ୟାକାଣ୍ଡ
କଲେ କି ନିଷ୍ପତ୍ତି ମିଳେ ? ।୧୬।

ପଶୁର ସ୍ୱାର୍ଥରେ ବାଧା ଦେଖାଦେଲେ
ହିଂସା ସ୍ୱଭାବେ ଆଚରେ,
ମନୁଷ୍ୟ ଯଦିବା ସେଇଆ କରିବ
ପଶୁଠାରୁ କି ଉଚ୍ଚରେ ? ।୧୭।

ପର ହତ୍ୟା ଠାରୁ ଆତ୍ମହତ୍ୟା ଅଟେ
ଅଧିକ ଜଘନ୍ୟ ପାପ,
ପର କଷ୍ଟ ସିନା ପ୍ରାଣକୁ ନଲଗେ
ନିଜ କଷ୍ଟେ କି ବଧିବ ? ।୧୮।
କୌଣସି ସମାଜେ କଉଣସି ଧର୍ମେ
ହିଂସା ନୁହେଁ ସମର୍ଥିତ,
ଧର୍ମମାନ୍ତ ହେଜ ଅହିଂସା ମାରଗେ
ଚଳବାରେ ହିଁ ଶାନ୍ତି ।୧୯।



# ଅବଶୋଷ

( ସମାଜରେ ତିନି ପ୍ରକାର ଲୋକ ଦେଖା ଯାଆନ୍ତି । ସୁକର୍ମୀ, ମନ୍ଦକର୍ମୀ ଓ ଅକର୍ମା । ଜୀବନର ଶେଷ ଭାଗରେ ଉପନୀତ ହୋଇ ଲେଖକ ନିଜକୁ ଅକର୍ମା ବୋଲି ଆବିଷ୍କାର କରି ଅବଶୋଷ କରିଛନ୍ତି । )

ମରିଗଲେ ଲୋକ ଆତ୍ମୀୟ
କରି ଥାଆନ୍ତି ଶୋକ,
ଶୋକର କାରଣ ଗୋଟିଏ
ନୁହଁଇ ତ ଅନେକ ।୧।
ମିଳୁଥିଲା ଯାହା ତା ଠାରୁ
ଆଉ ମିଳିବ ନାହିଁ,
ହଜିଲେ ପଦାର୍ଥ ଯେ ଦୁଃଖ
ଏହା ତା ସମ ନୋହିଁ ।୨।
ଯୋଗଥିଲେ ହଜା ଦରବ
ମିଳିଥାଏ ବା କେବେ,
ମରିଲା ଯେ ଲୋକ ତା କାମ
ଆଉ ନ ମିଳେ କେବେ ।୩।
କୁଟୁମ୍ବ ଭିତରେ, ସମାଜେ
ବନ୍ଧୁ ବାନ୍ଧବ ମେଳେ
ନିଜ ଗୁଣେ ସୁଖ ସରାଗ
ଦେଇ ଥିଲା ସେ ହେଲେ ।୪।

କାହାକୁ ଧନରେ କାହାକୁ
ଅବା ଦେଇଣ ମାନ,
କାହାକୁ ବଚନେ କାହାକୁ
କରି ଶରମ ଦାନ । ୫ ।

କାହା ଦୁଃଖ ଅପନୋଦନ
ପାଇଁ ନିଜର ସୁଖ,
ତ୍ୟାଗ କରିବାରେ କେବେ ସେ
ନ ହୁଅଇ ବିମୁଖ । ୬ ।

ମଲାପରେ ତାର ସଦ୍‌ଗୁଣ
ଏହି ପ୍ରକାରେ ଭାଳି,
ଦୁଃଖ କରିଥାନ୍ତି ସଭିଏ
ଶୋକ ଶ୍ୱାସକୁ ଢାଳି । ୭ ।

ଲୋକ ମଲା ସିନା ଗୁଣତ
ତା'ର ନୁହଁଇ ମୃତ,
ଗୁଣ ରୂପେ ସ୍ମୃତି ପଟରେ
ରହେ ସଦା ଜୀବିତ । ୮ ।

ପରିବାର କ୍ଷୁଦ୍ର ବେଷ୍ଟନୀ
ଟପି ଦେଶ ଓ ଦଶ,
ସେବାରେ କାଟେ ଯେ ଜୀବନ
ଲଭେ ଅକ୍ଷୟ ଯଶ । ୯ ।

ଭଲ ଗୁଣ ଭଲ କରମ
ପାଇଁ ସିନା ଆଦର,
ଅଗୁଣୀ ଅକର୍ମୀ ଲୋକଟି
ପରା ଅଟେ ଅସାର । ୧୦ ।

ଭଲତ କରେନ କାହାର
ମନ୍ଦ ପାଇଁ ଅଶକ୍ତ,
ଅଜଣା ଅଶୁଣା ରହଇ
ନୁହେଁ କା ପରିଚିତ । ୧୧ ।

ନଶ୍ୱର ଜୀବନ ଯାପଇ
ସର୍ବଦା ଉଦାସୀନ,
କାହାର ଭଲରେ ମନ୍ଦରେ
କେବେ ନ ଦଏ ମନ । ୧୨ ।
କେହ୍ନ କେବେ ତାକୁ ଲୋଡନ୍ତ
ନାହିଁ କୌଣସି କର୍ମେ,
ସଂପୂର୍ଣ୍ଣ ଅଖୋଜା ଅଲୋଡା
ହୋଇ ରହଇ ମର୍ମେ । ୧୩ ।
କୁଟୁମ୍ବ ଭିତରେ ନୁହଁଇ
ଭିନ୍ନ ତାର ଚଳଣି,
ପ୍ରକୃତ ସରାଗ କାହାର
ସିଏ ନ ପାଏ ପୁଣି । ୧୪ ।
ସେପରି ଲୋକର ମରଣ
ନୁହେଁ ଶୋକ କାରଣ,
ମଲା ପରେ ପରେ ମନରୁ
ହୁଏ ଅପସାରଣ । ୧୫ ।
ନାହିଁ ତାର ଗୁଣ କରମ
ଯାହା ହାରିଲେ ବୋଲି,
ଦୁଃଖ ଆବୋରିବ ମନକୁ
କାନ୍ଦ ହୋଇବେ ଝୁରି । ୧୬ ।
କୁ କର୍ମ ବି ତାର ନ ଥାଏ
ଯାହା ପାଇଁ ନିନ୍ଦିବେ,
ଜୀବନ ମରଣ ସମାନ
ତାହା ପାଇଁ ଏ ଭବେ । ୧୭ ।
ଅଛନ୍ତି ଅନେକ ଦୁର୍ଜନ
ନାହିଁ ବୁଦ୍ଧି ବିଚାର,
ଅନ୍ୟର କଷଣେ ଲଭନ୍ତି
ଥାନ୍ତି ସୁଖ ଅପାର । ୧୮ ।

ଅଶାନ୍ତ ଉଦ୍‌ବେଗ ଅନ୍ୟକୁ
ଦେବାରେ ତତ୍‌ପର,
ବିବାଦ କଳହ ଲଗାଇ
ବୋଲନ୍ତି ପାଣିବାର । ୧୯ ।
ସ୍ୱାର୍ଥ ହେଲା ବଡ଼ ବିଶ୍ୱର
ଅନ୍ୟ ଯା କିଛି ଗୌଣ,
ସ୍ୱାର୍ଥ ହାନି ହେଲେ କ୍ରୋଧରେ
ହୁଏ ଉନ୍ମତ୍ତ ପୁଣ । ୨୦ ।
ଏପରି ଲୋକଙ୍କ ପାଏନି
କେବେ କାହା ସହଯୋଗ,
ଅଭିଶାପ ସଦା ଦିଅନ୍ତି
ମନେ ବହି ବିରାଗ । ୨୧ ।
ଭୟେ ବାହାରକୁ ଛଳନା
କରି କହନ୍ତି ଭଲ,
ମନ ମଧ୍ୟେ ମାତ୍ର ଇଚ୍ଛନ୍ତି
ସଦା ତା ଅମଙ୍ଗଳ । ୨୨ ।
ମରଣ ବେଳରେ ପ୍ରକୃତ
ମନ କଥା ବାହାରେ,
ମଲା ନିଉଛୁଣା ଉଶ୍ୱାସ
ହେଲୁ ଆମ୍ଭେ ସକଳେ । ୨୩ ।
ଏହିପରି ତିନି ପ୍ରକାର
ଲୋକ ଛନ୍ତି ସମାଜେ,
ଭଲ ମନ୍ଦ ଜଣା ପଡ଼ଇ
ମଲାବେଳେ ସହଜେ । ୨୪ ।
ଭଲ ମନ୍ଦ ବାଣୀ ପ୍ରାଣୀର
ଜଣା ମରଣ କାଳେ,
ଭାଗବତେ ଲେଖା ରହିଛି
ସତ୍ୟଟି ସଦାକାଳେ । ୨୫ ।

ହେଜ ଏ ବାଣୀର ମହତ୍ତ୍ୱ
ଦେଟଲ ହୁକମେଁ ମନ୍ତି,
ଵଭୂ ପରସାଦ ଲଭିଣ
ହେବା ଭଲେ ଗଣନ୍ତି । ୨
କେଉଁ ପ୍ରକାରେର ଲେକ ହେ
ତୁମେ ନିଜେ ହରୁର,
କେଉଁ ପ୍ରକାରର ହେବାକୁ
ଇଚ୍ଛା ହୁଏ ତୁମର । ୨୭ ।
ଦିଶ୍ୱପୁ ପ୍ରକାର ହୋଇ ମୁଁ
ମଣେ ନିଜକୁ ହୀନ,
କେଳ ନାହିଁ ଚେଷ୍ଟା ପାଇଁ କ
ଅନ୍ତ ପାଖେ ମରଣ । ୨୮ ।



# କ୍ଷୀରନୀର

( ଅଭିମାନର ସଂଘର୍ଷ ଯୋଗୁ ମିଳନର ସୁଖ ବ୍ୟାହତ ହୁଏ । )

କ୍ଷୀର ନୀର ଉଭୟ ଅଟେ ତରଳ,
ନୀରଟି ବର୍ଣ୍ଣହୀନ କ୍ଷୀର ଧବଳ ।୧।

କ୍ଷୀର ସଙ୍ଗରେ ନୀର ମିଶିଣ ଥିଲେ,
ମିଶା କଥାଟି ଧରା ନପଡେ ଭଲେ ।୨।

ନୀରର ନାମ ଗନ୍ଧ ରହଇ ନାହିଁ,
କ୍ଷୀର ସଙ୍ଗରେ ନୀର କ୍ଷୀର ବୋଲାଇ ।୩।
କ୍ଷୀରରେ ନୀର କଲେ ଯେତେ ମିଶାଣ
କ୍ଷୀରର ଧବଳତା ନହୁଏ ମ୍ଳାନ ।୪।
ମାତ୍ର ତାର ଘନତା ହୁଏ ନିଉନ,
ବିଜ୍ଞାନ ଯନ୍ତ୍ରେ ତାହା ହୁଏ କଳନ ।୫।
ଅଭେଦ ଅଟେ କ୍ଷୀର ନୀର ମିଳନ,
ଭେଦ କରଣେ ନର ନୁହେଁ ଭାଜନ ।୬।
ବିଧି ବିଭୂତି ହଂସ କରେ ଧାରଣ,
ନୀର ଉପେକ୍ଷି କ୍ଷୀର କରଇ ପାନ ।୭।
ସମସ୍ତେ ସବୁବେଳେ ଦେଖୁ ଏ କର୍ମ,
ଉପାଦେୟତା ତାର ନବୁଝୁଁ ମର୍ମ ।୮।
ଅଭିମାନଟି ଥିଲେ ଏକା ବିଷୟେ,
ମିଳନ ସୁଖକର କେବେ ନହୁଏ ।୯।

କ୍ଷୀର ବର୍ଣ୍ଣାଭିମାନ ଅତି ପ୍ରଖର,
ବର୍ଣ୍ଣହୀନ ନୀରକୁ କରେ ଆଦର । ୧୦ ।
ନୀରଭିମାନ ନୀର ଆତ୍ମ ସମର୍ପେ,
ବୋଲଏ କ୍ଷୀର ଏବେ ମଙ୍କ ସମୀପେ । ୧୧ ।
କ୍ଷୀର ସାଙ୍ଗରେ ନୀର ମିଶିଣ ଥାଇ,
ମାତ୍ର ସେ କଥା କେବେ ଜଣା ନ ହୋଇ । ୧୨ ।
ମିଳନର ମାଧୁର୍ଯ୍ୟ ଲଭିବା ପାଇଁ,
ଇଚ୍ଛା କରୁଛ ଯେବେ ଭଉଣୀ ଭାଇ । ୧୩ ।
ତତ୍ତ୍ୱର ଅଭିମାନ ହେଲେ ଦୂରେଇ,
କ୍ଷୀରନୀର ମିଳନ ହେଲେ ଲଭଇ । ୧୪ ।
ଆଉର ଏକକଥା ଏଥେ ଅଛଇ,
ହଂସ ଗୁଣ କ ଆମେ ଶିଖିବା ନାହିଁ ? । ୧୫ ।
ଭଲମନ୍ଦ ମିଶିଣ ଏହି ଜଗତ,
ଜାଣି ନପାରେ ତାହା ଦୁର୍ବଳ ଚିତ୍ତ । ୧୬ ।
ଭଲମନ୍ଦ ଭିତରୁ ମନ୍ଦ ଉପେକ୍ଷି,
ଭଲ ନେଇଣ ଆମେ ହୋଇବା ସୁଖୀ । ୧୭ ।
ଜଣାଉ ଥିବା ସଦା ବନ୍ଧୁ ପଦ୍ମରେ,
ହଂସର ଗୁଣ ଅମେ ଲଭୁ ଅନ୍ତରେ । ୧୮ ।



# ସୁଖ

( ଭଗବାନ ଯାଚକର ବାଞ୍ଛା ପୂର୍ଣ୍ଣ କରନ୍ତି । ସେ ଯେତେ ସୁଖୀ, ତାହାର ସଂସାର ବନ୍ଧନ ସେତେ ଦୃଢ଼ । ଦୁଃଖୀ ଲୋକ କେବଳ ଭଗବାନଙ୍କୁ ଡ଼ାକିବାରେ ଆନନ୍ଦ ପାଏ । ସେ କିଛୁ ବିଭବ ମାଗିପାରେ ନାହିଁ । )

ପତିତ ପାବନ ହରି,
ଶୁଣ ବାରେ ମୋ ଗୁହାରି ।

କି ସୁଖ ମିଳେ ତୁମକୁ ମୋତେ ସଦା ଦୁଃଖୀ କରି । ଘୋଷା ।

ସୁଖୀ କରିଛ ଯାହାଙ୍କୁ କି ଗୁଣ ତାଙ୍କଠି ଦେଖି,
ଜାଣିତ ନ ପାରେ ମୁହିଁ କୁହ ପ୍ରଭୁ ଦୟାକରି । ୧ ।

କରିନି ପାତକ ମୁହିଁ କରିନି ଅଶାନ୍ତ କର୍ମ
ମାଗିନି କେବେ ବିଭବ ଜପେ ତୁମ ନାମ ଖାଲି । ୨ ।

ବୃଥା କି ହେଲା ସେ ସବୁ ଦେଖା ନ ହେଲା ତୁମକୁ,
ଦୁଃଖରେ ଦୁଃଖରେ ମୋର ଜୀବନକୁ ହେଲା ଘାରି । ୩ ।

ନ ମାଗିଲେ ମିଳେ ନାହିଁ ଯଦି ଏହା ତୁମ ଶାନ୍ତି,
ସୁଖୀ ହୋଇଛନ୍ତି ଯିଏ ତୁମ ପାଖେ କି ଭିକାରି ? । ୪ ।

ଭିକାରିର ମଗା ଭାବ ନୁହିଁଇ କେବେ ତୃପତ,
ମାଗି ମାଗି ଦୃଢ଼ କରେ ସଂସାର ବନ୍ଧନ ଡ଼ୋରି । ୫ ।

ସମାଜରୁ ଲୁଟି ଧନ ବୋଲନ୍ତି ପୁଣି ଧନିକ,
ଚୋର ଚୋର ବୋଲି ମାତ୍ର ଲୋକ ମୁଖେ ପଡ଼େ ହୁରି । ୬ ।

ସୁଖର ଉପାୟ ଯଦି ଚୌର୍ଯ୍ୟ ଆଉ ଭିକ୍ଷା ବୃତ୍ତି,
ଲୋଡ଼ା ନାହିଁ ସେ ସୁଖ ମୋ ଦୁଃଖେ ପଛେ ଯାଏ ସରି । ୭ ।

କାମନା ନ କରି କିଛୁ ଜପେ ତୁମ ନାମ ସଦା
ନ ହେଉ ତା ବୃଥା ପଚଛେ ନ ମିଳୁ ସେ ସୁଖ ଶିଖା । ୮ ।

ଏତିକ ପ୍ରାର୍ଥନା ପ୍ରଭୁ ତୁମ ପଦ କଞ୍ଜ ତଳେ,
ଧେନା ହେଉ ମୋ ଜଣେ ମିଳୁ ତୁମ ଭକ୍ତ ବାରି । ୯ ।

ଅନିତ୍ୟ ସଂସାର ସୁଖ ଲୋଡ଼ ନାହିଁ କେବେ ମୁହିଁ,
ମିଳୁ ସେବା ସୁଖ ମୋତେ ଯାହା କେବେ ହେଁ ନ ସରି । ୧୦ ।



# ମୃତ୍ୟୁଚିନ୍ତା

( କେହି ଜଣେ ଦୁଃଖ ଯନ୍ତ୍ରଣା ଭୋଗ କରି, ଅନ୍ୟଙ୍କୁ ହନ୍ତସନ୍ତ କରି ମରେ । କେହି ଜଣେ କଷ୍ଟ ନ ଭୋଗି ଅନ୍ୟଙ୍କୁ କଷ୍ଟ ନ ଦେଇ ହଠାତ୍ ପ୍ରାଣ ଛାଡ଼େ । ଜଣେ ଦୁଃଖରେ ଓ ଆଉ ଜଣେ ସୁଖରେ ମରେ — ଏପରି କାହିଁକି ହୁଏ — ତାହା ମନୁଷ୍ୟର ଅଗୋଚର । କଷ୍ଟ ବେଳେ ସେବା ଯତ୍ନ ମିଳିବାରେ ଯାହାର ଅସୁବିଧା ହୁଏ (ବୃଦ୍ଧଙ୍କ ପରି) ତାହାର ଅବସ୍ଥା ଆହୁରି ଦୟନୀୟ । )

ଜୀବନର ଶେଷଭାଗେ ହୋଇ ଉପନୀତ,
ବସି ବୃଦ୍ଧ କରେ ଚିନ୍ତା ମୃତ୍ୟୁର ବୃତ୍ତାନ୍ତ,
କାହିଁ ପାଇଁ ଭଗବାନ,
ସନ୍ତାପିତ କର ମୋରେ ଖଞ୍ଜିଣ ମରଣ ।୧।

ଯେତେ ଦୁଃଖ ଥିଲେ ଦିଅ ଜୀବନଟି ଥାଉ,
ଜୀବନ ଗଲେ ବିଭବ ମିଳଇ କି ଆଉ,
କେହି ନ ଚାହେଁ ମରଣ,
ଖଞ୍ଜି ତାକୁ ଭୟାତୁର କର ଅକାରଣ ।୨

କଷ୍ଟ କରି ଅରଜନ୍ତି ଯେତେକ ସଂପତ୍ତି,
ପୁଅ ଝିଅ ପରିଜନ କୁଟୁମ୍ବାଦି ଜ୍ଞାତି,
ଛାଡ଼ି ସବୁଧନ ପାଇଁ,
ଚାଲିଯିବ ପୁଣି କେବେ ଭେଟ ହେବ ନାହିଁ ।୩।

ଦିନେ ଓଳଏ କୁଅ ତେ ଗଲେ ତାଙ୍କୁ ଛାଡ଼,
ଅଥବା ହୁଏ ପବଣ ଗଲା କ ଉଜାଡ଼,
ଫେର ଗୋଟି ଗୋଟି କର,
ଭଲମନ୍ଦ ନ ବୁଝିବା ଯାଏ ମୂଣ୍ଡ ଘର ।୪।
ମଣିଷର ମନକଥା ବୁଝନା କି ପ୍ରଭୁ,
ମରଣ ଖଞ୍ଜାଇ ତାଙ୍କୁ କରୁଅଛ କାବୁ,
ଏତେ ନିଷ୍ଠୁର କର୍ମାଇଁ,
ଦଣ୍ଡ ଦେବା ପାଇଁ କଣ ଅନ୍ୟ ବାଟ ନାହିଁ ? । ୫ ।
ମୃତ୍ୟୁ କି ନିୟମ କିଛି ନାହିଁ ପୃଣି ତାର,
ବାଳବୃଦ୍ଧ ଯୁବା କିଛି କରେ ନା ବିଚାର,
ନାହିଁ ଦିନ କାଳ ତାର,
ଅଚାନକ ଆସି ପ୍ରାଣ କରଇ ସଂହାର । ୬ ।
ଧନୀ ମାନୀ ଦୁଃଖୀ ରଙ୍କି ରୋଗୀ ଅବା ସୁସ୍ଥ,
ପ୍ରତିପତ୍ତିଶାଳୀ ଅବା ଅତୀବ ଅଜ୍ଞାତ,
ଶୁଣେ ନାହିଁ କାର କଥା,
ଉପ୍ରାଧ ନାହିଁ ତାହାର ନଥାଏ ମମତା । ୭ ।
ଦଣ୍ଡେ ଡେରିଏ ଅପେକ୍ଷା କରେ ନାହିଁ ସିଏ,
ଆସିବା ଆଗରୁ ମଧ ଖବର ନ ଦିଏ,
ବେଳ ନ ମିଳେ ପ୍ରାଣୀକୁ,
କହି ପୋଛି ଶେଷ ବେଳେ ବିଦାୟ ନେବାକୁ । ୮ ।
ଥାଅ ତୁମେ ପ୍ରାଣୀ ଦେହେ ଜୀବ ରୂପ ନେଇ,
ତୁମ ଅଂଶୀ ଜୀବର କି ମରଣ ହୁଅଇ,
ଖାଲି ମରଇ ଶରୀର,
ନୂତନ ଶରୀରେ ବାସ ହୁଏ ସେ ଜୀବର । ୯ ।
ନୂତନତା ପାଇଁ ଯଦି ମରଣ ଖଞ୍ଜିଲ,
ବାଛି କି ନଅନ୍ତା ସିନା ପୁରୁଣା ଶରୀର,
ଅଟ ଅବିବେକୀ ସିଏ,
ଖିଆଲି ପରିଏ ବୁଢ଼ା ଛାଡ଼ି ଯୁବା ନିଏ । ୧୦ ।

ବାପ ଆଗେ ପୁଅ ମରେ ଶିଶୁର ମରଣ,
ଅଳପ ବୟସେ କେତେ ଗ୍ଭଡନ୍ତ ପରାଣ
ପ୍ରିୟ ବନ୍ଧୁ ପରିଜନ,
ଶୋକରେ ଅଧୀର ହୋଇ ହେଗନ୍ତ କଷଣ । ୧୧ ।
ନୂତନତା ନାମେ ଅବ୍ୟବସ୍ଥା ହଅ ମେଲ,
ଦୁଃଖେ ଆମେ ସତ୍ରୁ ତୁମେ ସୁଖେ ଖେଳ ହୋଲ ।୧୨।
ଏକ ନ୍ୟାୟର ଶାସନ,
ମରଣ ପାଇଁ କି ନାହିଁ ନିୟମ କାନୁନ ? । ୧୩ ।
ମୃତ୍ୟୁ କି ନୁହଇ, ତୁମ ଶାସନ ଅଧୀନ,
ଅବା ସିଏ ସ୍ୱୟଂ ନିୟୁ ଅଟଇ ସ୍ୱାଧୀନ,
ସ୍ୱେଚ୍ଛାଗ୍ଭରୀ ମନମୁଖୀ,
ନିୟା କଳାପରେ ତାର କେହି ନୁହେଁ ଦୁଃଖୀ ।୧୪।
ନିର୍ଦ୍ଦିଷ୍ଟ ବୟସ ଯଦି ରହନ୍ତା ମରଣକୁ,
ସବୁ ଦୁଃଖ ଅବ୍ୟବସ୍ଥା ଯାଆନ୍ତା ଦୂରକୁ,
ସବେ ହେଲେ ଦୃଢ଼ ମନ,
ମୃତ୍ୟୁ ଆଉ ନ ହୁଅନ୍ତା ଭୟର କାରଣ । ୧୫ ।
ଏବେ କିନ୍ତୁ ନିର୍ଦ୍ଦିଷ୍ଟତା ନଥିବାରୁ ତାର,
ବାଳବୃଦ୍ଧ ନିର୍ବିଶେଷେ ଭୟରେ ଅସ୍ଥିର,
ଗୁଡ଼େ ଘେନଲେ ମନକୁ,
ପଡଆର ନ ରହଇ ପର ମୁହୂର୍ତ୍ତକୁ । ୧୬ ।
ଢ଼ର ଢ଼ର ବାଳକାନ୍ତୁ ବୁଢ଼ା ହେଲି ଆସି,
ଆଉ ଆଶା ନାହିଁ ତାର ଯିବ ତାଠୁ ଖସି,
ଯିବା କଥା ସୁନିଶ୍ଚିତ,
କପରି ଯିବ ହେ କଥା କରେ ଆନ୍ଦୋଳିତ ।୧୭।
ପ୍ରାଣ ନେଲା ପ୍ରଭୁ ସିଏ ଅଶେଷ ଯାତନା,
ଭୋଗାଏ ପ୍ରାଣୀକୁ ତାର ନଥାଏ ଗ୍ଭବନା,
କରେ ସମ୍ପୂର୍ଣ୍ଣ ଅଚଳ,
ଯନ୍ତ୍ରଣାଗ୍ରସ୍ତ ହୋଇ ପ୍ରାଣୀ ହୁଅଇ ବିକଳ ।୧୮।

ହସ୍ତ ପଦାଦ ଅଚଳ ଇନ୍ଦ୍ରିୟ ଅବଶ,
ଉତ୍ଥାନଶକ୍ତି ରହିତ ସର୍ବାଙ୍ଗରେ କ୍ଳେଶ,
        ମଳମୂତ୍ର ତ୍ୟାଗ ପାଇଁ,
ଶକ୍ତି ନରହଇ ବଡ ଦୟନୀୟ ହୋଇ । ୧୯ ।
ପୁଣି କେତେ କେତେ ଲୋକ ବସିବା ସ୍ଥାନରେ,
ଟଳିପଡ଼ ତେଜେ ପ୍ରାଣ ଅଜଣା ଭବରେ,
        କାହାକୁ ନଦଏ ଦୁଃଖ,
ସୁଖର ମରଣ ବୋଲି ରଟେ ଲୋକ ମୁଖ । ୨୦ ।
କାହା ପ୍ରାଣ ନାଏ ସୁଖେ ଦୁଃଖେ ବା କାହାର,
କି ଉପାୟେ ହୁଏ ସ୍ଥିର ନରେ ଅଗୋଚର,
        ଅସ୍ଥିର କରଇ ପ୍ରାଣ,
ମୃତ୍ୟୁ ପାଖ ହୋଇ ବୃଦ୍ଧ କରଇ ମନନ । ୨୧ ।
କେତେ କେତେ ଲୋକଙ୍କର ଦେଖିଛି ମରଣ,
କିଏ ଦୁଃଖେ କିଏ ସୁଖେ ତେଜିଲେ ପରାଣ,
        କେଉଁ ମୃତ୍ୟୁ ତାହାପାଇଁ,
ଦୁଃଖର କିବା ସୁଖର କିଏ କହିବଇଁ । ୨୨ ।
ତ୍ରୁଟୀୟ ନ ଜାଗେ ମନେ ସୁଖ ମୃତ୍ୟୁ ପାଇଁ,
ଦୁଃଖ ମୃତ୍ୟୁ କଳ୍ପି ବୃଦ୍ଧ ଅସ୍ଥିର ହୁଅଇ,
        ଭାବେ କିଏ ସାହା ହେବ,
ଅହର୍ନିଶ ବସି ପାଖେ ତା ସେବା କରିବ । ୨୩ ।
ଟେକାଉଠା ମଳମୂତ୍ର କର ପରିଷ୍କାର,
ଔଷଧ ପଥ୍ୟାଦ୍ଦ ପୁଣି କେତେ ଉପଚାର,
        କେଉଁ ଆତ୍ମୀୟ ତାହାର,
କରିବ ଏ କଷ୍ଟ କର୍ମ ତେଜ ଅହଙ୍କାର । ୨୪ ।
ଅଟଳ ରୋଗୀର ସେବା ନୁହଁଇ ସହଜ,
ଆନ୍ତରିକତା ନଥିଲେ ନୁହଁଇ ଏ କାର୍ଯ୍ୟ,
        କେହି ନଆସେ ମନକୁ,
ଧିକ୍କାର କରଇ ବୃଦ୍ଧ ନିଜ କପାଳକୁ । ୨୫ ।

ଯାହାଙ୍କୁ ଦେଖିଛୁ ଦୁଃଖ ଭୋଗି ମରିବାର,
ସେବା ଯତନ ଅଭାବ ନଥିଲା ତାଙ୍କର,
ତାଙ୍କ ଆତ୍ମୀୟ ସ୍ୱଜନ,
ସେବୁଥିଲେ ଯଥାବଧି ଦେଇ ମନ ପ୍ରାଣ । ୨୬ ।
ବୃଦ୍ଧ କନ୍ୟା ହତାଶାରେ ହୁଅଇ ବିକଳ,
ଆତ୍ମୀୟମାନେ କି ତାର ଅଟନ୍ତି ଚଣ୍ଡାଳ,
କିବା କେତେ ସେ ଦୁର୍ବୃତ୍ତ,
ତୋଷିପାରି ନାହିଁ କେଉଁ ଆତ୍ମୀୟର ଚିତ୍ତ । ୨୭ ।
ନୁହଁନ୍ତି ଚଣ୍ଡାଳ କେହି ନୁହେଁ ସେ ଦୁର୍ବୃତ୍ତ,
ଅର୍ଜିତ ଭଣ୍ଡାର ବୃଦ୍ଧ ମନ କରେ ଶାନ୍ତ,
ସ୍ୱାର୍ଥ ବଶ ସଦା ନର,
ସ୍ୱାର୍ଥ ଯହିଁ ନାହିଁ ତହିଁ ନୁହେଁ କାରବାର । ୨୮ ।
ଦୁଃଖରେ ଦୁଃଖରେ ସେତ କାଟିଛି ଜୀବନ,
ଦେଇନ କାହାକୁ କିଛି ତୋଷିନି କା ମନ,
ନାହିଁ ବାପ ନାହିଁ ଧନ,
ଅତିଥି ପରାଏ ପୁଣି କାଟୁଅଛି ଦିନ । ୨୯ ।
ସୁସ୍ଥବେଳେ ଭିନ୍ନ କଥା ଯୁ! ଘରେ ତା ଘରେ,
ଅତିଥି ହେଲେ ଆପତ୍ତି ନ ଉଠଇ ଭଲେ,
ମାତ୍ର ରୋଗବେଳେ କଥା,
ଯା ଘରେ ଯିବ ତାହାର ହେବ ମୁଣ୍ଡବ୍ୟଥା । ୩୦ ।
ବେଓ୍ୟାରସ ମାଲ ପରି ହେବ ଅନାଦର,
ଦି ତିନ ଘର କୁଟିଆ ଉପାସ ପ୍ରକାର,
ସେବା କଥାରେ ରହିବ,
ଅଯତ୍ନରେ ପଡ଼ି ପଡ଼ି ପ୍ରାଣ ଉଡ଼ିଯିବ । ୩୧ ।
ବୃଦ୍ଧର ଭାବନାଧାରା ଗଲେ ଏ ପ୍ରକାର,
ହତାଶାରେ ମ୍ରିୟମାଣ ହୋଇ ଯୋଡେ କର,
କହେ ପ୍ରଭୁ ଦୟାକର,
ଭଲବେଳେ ଛାଡ଼ୁ ପ୍ରାଣ ନୋହୁ ହରବର । ୩୨ ।

# ଭଜନ

କୃଷ୍ଣ ଭଜ ରାମ ଭଜ
ଭଜ ଗୋପାଳ,
ଯିଏ କୃଷ୍ଣ ସେହି ରାମ
ସେ ମହୀପାଳ ।୧।

ସେହି ହରି ସେ ଗୋବିନ୍ଦ
ସେ ନାରାୟଣ,
ଭଗବାନ ବନ୍ଧୁ ପ୍ରଭୁ
ଆଦି-କାରଣ ।୨।

କେତେ ନାମେ ନାମୀ ସେହି
ନୁହେଁ କଳନ,
ଜପେ ଯିଏ ନାମ ତାଙ୍କ
ସୁଖେ ଭଜନ ।୩।

ଯେଉଁ ନାମେ ଜପ ତାଙ୍କୁ
ସେ ଭବତ୍ରାଣ,
ଭାବ ଦେଖ ଫଳ ଦେଇ
ଦାତା ବୋଲାଇ ।୪।

ଜଗତର ପ୍ରଭୁ ସେହି
ଆନ କେ ନାହିଁ,
ସୁଖ ହେଉ ଦୁଃଖ ହେଉ
ସେହି ଦିଅଇ ।୫।

ମନ ଦେଲେ ତା ପଦରେ
ଦୁଃଖ ପଳାଇ,
ଜଗତର ଝଡଝଞ୍ଜା
ଦୂରେ ରହଇ । ୬ ।
ବୃଥା ମନ ନୁହେଁ ସ୍ଥିର
କାମ ମୋହତ,
କାମ ସଙ୍ଗେ ଲୋଭ, କ୍ରୋଧ
ଆସେ ତୁରନ୍ତ । ୭ ।
ଯେତେ ଦୁଃଖ ଭୋଗେ ନର
କାରଣ ଇଏ,
ଆମ ଚେଷ୍ଟା ନୁହେଁ କ୍ଷମ
ହଟେ କି ସିଏ ? । ୮ ।
ଏକ ମାତ୍ର ବିଭୁ ଆଶ୍ରା
ଯେବେ କରିବ,
କାମ ସବୁ ଦୂର ହେବ
ଶାନ୍ତି ଲଭିବ । ୯ ।
ହରି କୃପା ବିନା କାମ
ନୁହେଁ ଆୟତ୍ତ,
ହରି କୃପା ପାଇଁ ଜପ
ନାମ ସତତ । ୧୦ ।
ନାମ ଜପେ ଯେଉଁ ସୁଖ
ଆନ କି ଦିଏ,
କାମ ଗଲେ ଯେଉଁ ଶାନ୍ତି
ଭୋଗେ ନ ଥାଏ । ୧୧ ।
ଛାଡ ସବୁ ଭଜ ହରି
ଭଜ ଗୋବିନ୍ଦ,
ରାମ କୃଷ୍ଣ ନାରାୟଣ
ପଦାରବିନ୍ଦ । ୧୨ ।

# ଇନ୍ଦ୍ରିୟ ଯଜ୍ଞ

( ଯତ୍ନ କରି ଇନ୍ଦ୍ରିୟମାନଙ୍କୁ ଭଗବାନଙ୍କ କାମରେ ଲଗାଇଲେ ( ପାଟିରେ ହରିନାମ କହିବା, କାନରେ ହରି କଥା ଶୁଣିବା, ଆଖିରେ ହରି ବିଗ୍ରହ ଦର୍ଶନ କରିବା, ପ୍ରସାଦ ପାଇବା, ଫୁଲ ଚନ୍ଦନ ଦେଇ ଠାକୁର ପୂଜା କରିବା, ତୀର୍ଥଯାତ୍ରା କରିବା ଇତ୍ୟାଦି ) କାମନାର ପ୍ରଭାବ ହ୍ରାସ ହେବା ସଙ୍ଗେ ଆସକ୍ତି, ଅଭିମାନ ଛୁଡ଼ିଯାଏ । ଏପରି ଅବସ୍ଥାରେ ଆତ୍ମ ସମର୍ପଣ ସହଜ ହୁଏ ଓ ବ୍ରହ୍ମାନନ୍ଦ ସୁଖଲାଭ ପଥରେ ସାଧକ ଅଗ୍ରସର ହୁଏ । )

ହରି ହରି କହ ପାଟି
　　ରାମ ରାମ କହ,
ଆଉ ଯେତେ ଶବ୍ଦ କହୁ
　　କାହିଁରେଟି ନୁହଁ ।୧।
ହରେ କୃଷ୍ଣ ହରେ ରାମ
　　ଗାଇଲେ ଯେ ସୁଖ,
ଆନ ଗାନେ ନ ମିଳଇ
　　ମନରେ ପରଖ ।୨।
କେତେ ଶବ୍ଦ ଦିନ ରାତି
　　କରୁ ଉଚ୍ଚାରଣ,
ସତ ମିଛ ଭଲ ମନ୍ଦ
　　ନ ଥାଏ ବାରଣ ।୩।

ପରନିନ୍ଦା କରୁ ପୁଣି
ଗାଳି ମନ୍ଦ କରୁ,
ଜାଣି ଶୁଣି ସନ୍ତ ତାଙ୍କି
ମିଛଟି ଝଗଡ଼ାରୁ । ୪ ।

କଏ ହୁଏ ଶତ୍ରୁ କଏ
ହୁଅଇ ବାନ୍ଧବ,
ଅଜାଣତେ ଘଟିଯାଏ
ବଦଳେଟି ଭାବ । ୫ ।

ଭଲ କଥା ସତ୍ୟ କଥା
କହିବାର ଧାରା,
ତାହା ସଙ୍ଗେ ହରି ନାମ
ହେଉ ତୋ ପସରା । ୬ ।

ହରିନାମ କହିବାରେ
ଧନ କି ସରଇ,
ପବିତ୍ରତା ହଏ ପୁଣି
ଦୁର୍ଭାଷା ଏଡ଼ାଇ । ୭ ।

ଅଭ୍ୟାସିଲେ ହରିନାମ
ହରି ପଦେ ମନ,
ଲୋଭ ଆପେ ଲଭ୍ୟ ହୁଏ
ହରିପ୍ରେମ ଧନ । ୮ ।

କେତେ କେତେ ଶବ୍ଦ କାନ
ଶୁଣୁରେ ସତତ,
କଏ ଭଲ କଏ ମନ୍ଦ
ଅନ୍ତ କଳୁଷିତ । ୯ ।

ସଙ୍ଗୀତର ମିଠା ସ୍ୱର
ନର୍ତ୍ତକୀର ତାନ
ଶୁଣି ହେଉ ଭୋଳ ତୋର
ରହେ ନାହିଁ ଜ୍ଞାନ । ୧୦ ।

କେତେବେଳେ କଳଗୋଳ
ଗାଳି ମନ୍ଦ ଭାଷା,
ପଡ଼ୁଥିଲ ତୋ ପାଖରେ
ହରାଏ ଭରସା । ୧୧ ।

ସ୍ପନ୍ଦନର ରେକ ପୁଣି
ହସର ମୂର୍ଚ୍ଛନା,
ଶୁଣି ଏବେ ଅଭାବର
ଦୁଅଇ ସର୍ଜନା । ୧୨ ।

ଭୁଲ୍ ଠିକ୍ ଭଲମନ୍ଦ
ପାପ ପୁଣ୍ୟ କଥା,
ଶୁଣି ଶୁଣି ଲୋକମାନ
ଧରେ ତୋ ଅବସ୍ଥା । ୧୩ ।

ହରି ନାମ ରାମ ନାମ
କୃଷ୍ଣ ନାମ ପୁଣି,
ଶୁଣି ନାହୁଁ କେବେ କରେ
ଏତେ ଅବଗୁଣୀ । ୧୪ ।

ଶବ୍ଦ ମଧ୍ୟେ ସାର ତାହା
ଶୁଣି ହୋ ପବନ,
ଶୁଣିବାକୁ ସଦାବେଳେ
ହେଉ ତୋର ଯତ୍ନ । ୧୫ ।

ଭକ୍ତମାନେ ହରିନାମ
ଗାଉଛନ୍ତି ଯହିଁ
ଖୋଜି ଭଣ୍ଡି ପହଞ୍ଚଯା
ଶୁଣିବାର ପାଇଁ । ୧୬ ।

ଶୁଣି ଶୁଣି ହରି ନାମ
ହରିପଦେ ପ୍ରୀତି,
ଜନମିବ ଲଭିବୁ ତୁ
ଅଚଳା ଭକତି । ୧୭ ।

ଆଖି ଦେଇଛନ୍ତି ପ୍ରଭୁ
ଦେଖିବାର ପାଇଁ,
କେତେ କେତେ ଦୃଶ୍ୟ ଆଖି
ସଦା ଦେଖୁଥାଇ । ୧୮ ।
ବଟିଗଛର ଫୁଲ ପୁଣି
ସମୁଦ୍ର ତରଙ୍ଗ,
ଆକାଶର ଇନ୍ଦ୍ରଧନୁ
ବଣର କୁରଙ୍ଗ । ୧୯ ।
ଚନ୍ଦ୍ରର କୁଢ଼ଆକୁ
ସୁଉଚ୍ଚ ଅଟ୍ଟାଳି,
ଦୁଃଖ ଅଶ୍ରୁ ଅଟ୍ଟହାସ
ଶୁଖୁଆ ଅକାଳ । ୨୦ ।
ନବଶିଶୁ ଜନ୍ମୋଲ୍ଲାସ
ଶ୍ମଶାନର ଯୁଇ,
ପ୍ରେୟସୀର ତନୁଲତା
ଭୁଲ ଅଙ୍କା ଛଇ । ୨୧ ।
ଦେଖେ ଆଖି କେବେ ପ୍ରୀତ
କେବେ ଦୁଃଖୀ ହୋଇ,
ସାର୍ଥକ କି ହୁଏ ଆଖି
ଏଥେ ବାଇ ହୋଇ ? ।୨୨।
ଯେତେ ଯେତେ ରୂପ ଆଖି
ଦେଖେ ଏହିପରି,
ପ୍ରାକୃତିକ ବା କୃତ୍ରିମ
ସେ ସବୁ ବସ୍ତୁର ।୨୩।
ଅପ୍ରାକୃତ ପ୍ରେମମୂର୍ତ୍ତି
ଦେଖିଛନ୍ତି ଆଖି,
ଯେତେ ଯାହା ଦେଖୁଅଛୁ
ନୁହେଁ କେ ତା ଲାଗି ।୨୪।

ହର ରୂପ ବିଗ୍ରହଟି
ଯହିଁ ଯହିଁ ଅଛି,
ବୁଲି ବୁଲି ଦେଖ ଆଖି
ଦୁଃଖ ଯାଉ ଘୁଞ୍ଚି ।୨୫।

ହରି ବିଗ୍ରହରେ ଆଖି
ମଜ୍ଜିଗଲେ ଥରେ,
ଆଉ ସବୁ ରୂପ ହେବ
ତୁଚ୍ଛ ତୋ ନଜରେ ।୨୬।

ରସନାର ତୃପ୍ତି ପାଇଁ
ହୁଏ କେତେ ସଜା,
ନୂଆ ନୂଆ ଜିନିଷ ତା
ପାଇଁ ହୁଏ ଖୋଜା ।୨୭।

ଶରୀରକୁ ଜ୍ୱାଳା ଦିଏ
ମନ ଉଚ୍ଚାଟଇ,
ଧନ ହାନି ପ୍ରାଣପୀଡ଼ା
କାରଣ ହୁଅଇ । ୨୮ ।

ଠାକୁର ପ୍ରସାଦେ ନାହିଁ
ଏପ୍ରକାର ତ୍ରୁଟି,
ପବିତ୍ର କରଇ ପ୍ରାଣ
ହରେ ସବୁ ଭ୍ରାନ୍ତି ।୨୯।

ଖାଇବା ପାଇଁ ସର୍ବଦା
ଠାକୁର ପ୍ରସାଦ,
ମନରେ ଶ୍ରଦ୍ଧା ଜାଗୁ
ନ ରହୁ ପ୍ରମାଦ ।୩୦।

ବନ୍ଧୁ କରୁଣା ପ୍ରତୀକ
ମନ୍ଦିରର ଭୋଗ,
ଖାଇବାରେ ଜିଭ ତୋର
ବଢୁରେ ସରାଗ । ୩୧ ।

ଫୁଲର ସୁରଭି ପୁଣି
କୃତ୍ରିମ ବାସନା,
ଘ୍ରାଣ ପାଇଁ କମ୍ପା ନାକ
ଏଡ଼କ କାମନା ? । ୩୨ ।
ଧୂପ ଧୂପ ଚନ୍ଦନ ଓ
ଫୁଲ ମିଶିକରି,
ମନ୍ଦିର ବେଢାରେ ଯେଉଁ
ବାସନା ସଞ୍ଚରି । ୩୩ ।
ନୁହେଁ ତାହା ସମ ତୋର
ତେଲ ପାଉଡର,
ମନ୍ଦିଲେ ଥରେ ସେଥିରେ
ଏସବୁ ଅସାର । ୩୪ ।
ମନ୍ଦିରେ ବୁଲି ଆଘ୍ରାଣ
କର ସେ ବାସନା,
ଅନ୍ୟାନ୍ୟ ବାସନା ପ୍ରତି
ହୁଅ ତୁ ବିମନା । ୩୫ ।
ସୁକୋମଳ ଅଙ୍ଗ ଲୋଡ଼େ
ସୁକୋମଳ ଶେଯ,
କୋମଳ ପଦାର୍ଥ ସ୍ପର୍ଶ
ଲାଗଇ ମଉଜ । ୩୬ ।
ଗଡ଼ିଛ କି କେବେ ଥରେ
ବାଇଶି ପାହାଚେ,
ଗୁଳି ସାହାପରେ ଭକ୍ତ
ଆହ୍ଲାଦେ ପଡ଼ନ୍ତେ ।୩୭।
ଭକ୍ତ ପଦରଜେ ତାହା
ହୋଇଛି ପବିତ୍ର,
ସେ ଧୂଳି ଲାଗିଲେ ତନୁ
ହୁଏ ପୁଲକିତ । ୩୮ ।

ଶେଯ ନୁହେଁ ପାହାଚର
ଧୂଳି ଲଗୁ ଦେହେ,
ଦେହକୁ ଲଗିବ ତାହା
ଆଉଜର ପ୍ରାୟେ ।୩୯।
ହରି ଭାବେ ମନ ହେବ
ପରିତୋଷମୟ,
କୋମଳ ପଦାର୍ଥ ସୁଖ
ଲଗିବରେ ହେୟ ।୪୦।
କେତେବେଳେ ହାତ ଛଡେ
ନାହିଁରେ ବିଶ୍ରାମ,
ସବୁବେଳେ କରୁଥାଉ
କିଛି କିଛି କର୍ମ ।୪୧।
ଯେଉଁ କାମ କରୁ ତାହା
ଭଲ ଅବା ମନ୍ଦ,
ଭାବୁନାହୁଁ କେବେ ତୁହି
ନାହିଁ ତୋର ଦ୍ୱନ୍ଦ୍ୱ ।୪୨।
କେତେବେଳେ କାହାଠାରୁ
ଧନ ଲୁଟି ନେଉ,
କେତେବେଳେ କାହାର ବା
ତଣ୍ଟି ଚିପି ଥାଉ ।୪୩।
ଅସ୍ତ୍ର ଧରି କେତେବେଳେ
କରୁ ଜୀବ ହିଂସା,
କେତେବେଳେ ଘରପୋଡ଼ି
ବୁଡାଉ ଭରସା ।୪୪।
ଯିଏ ଯାହା ଦେଲ ତାହା
ନେଉ ଆଗ୍ରହରେ,
କେବେ କିଛି ଦେଇଛୁ କି
ସ୍ନେହେ କା ହାତରେ ? ।୪୫।

ଭଲ କାମ କଲେ ସିନା
ହେବ ତୋର ପୁଣ୍ୟ,
ମନ୍ଦ କାମ କରି ଖାଲି
ହେଉଅଛୁ ଘୃଣ୍ୟ ।୪୬।

ଅସଲ କର୍ମ ତୋହର
ଦାନ ଓ ଗ୍ରହଣ,
ଗ୍ରହଣ କରୁ ତୁ ଖାଲି
ଦାନେ ନାହିଁ ମନ ।୪୭।

ବନ୍ଧୁ ଅନୁଗ୍ରହେ ଯାହା
ଅରଜୁଛୁ ଧନ,
ସାତ୍ତ୍ୱିକ ଭାବରେ କରୁ
କରୁଥିବୁ ଦାନ ।୪୮।

ଦାନ କଲେ ଧନ ତୋର
ହେବ ନାହିଁ କ୍ଷୟ,
ଗ୍ରହୀତାର ଆଶୀର୍ବାଦେ
ଲଭିବୁ ତୁ ଜୟ ।୪୯।

ଠାକୁର ପୂଜାରେ ଯେଉଁ
କାମ କରେ ହାତ,
ଅନ୍ୟ କାମ ନୁହେଁ ସରି
ଭାବି ପାରୁଛୁତ ? ।୫୦।

ଫୁଲ ତୋଳା ହାର ଗନ୍ଥା
ଘଣ୍ଟି ଠିଣ୍ ଠିଣ୍,
ଚନ୍ଦନ ଘୋରା ହାଙ୍କୁ
ଧୂପରେ ବଢାଣ ।୫୧।

ଶ୍ରଦ୍ଧାରେ ଏ କାମ ଯେବେ
କରିବୁରେ ନିତ,
ପବିତ୍ର ହୋଇବୁ ବନ୍ଧୁ
କୃପା ଲଭିବୁଟି ।୫୨।

ଅପକର୍ମ ଗୁଡ଼ ହାତ
ଦାନ ଓ ପୂଜନ,
କରମ କର ସାର୍ଥକ
କର ହାତ ଜନ୍ମ ।୫୩।

କେତେ କେତେ ଜାଗା ପାଦ
ଯାଉଥାଉ ଛୁନ୍ତି,
କୋଅର୍ଟ କଚେରି ପୁଣି
ବାରନାରୀ ସାଙ୍ଗ ।୫୪।

ମଦଭାଟି ଯାଉ ପୁଣି
ପ୍ରେକ୍ଷାଳୟ ଯାଉ,
ଧନ ଉପାର୍ଜନ ପାଇଁ
ଦେଶାନ୍ତରୀ ହେଉ ।୫୫।

ବନ୍ଧୁ ବିଗ୍ରହ ଦର୍ଶନ
ପାଇଁ ମନ୍ଦିରକୁ,
ଯାଉନାହୁଁ ପାଦ କମ୍ପା
ପଶୁର ମନକୁ ।୫୬।

ସଦ୍ୟ କିଛି ମିଳେନାହିଁ
ମନ୍ଦିର ଭିତରୁ,
ବୃଥା ଶ୍ରମ ହୁଏ ବୋଲି
ମନରେ ବିଚାରୁ ।୫୭।

ବନ୍ଧୁ ଦର୍ଶନରେ ଯାହା
ମିଳେରେ ବାଉଳ,
ସମଗ୍ର ପାର୍ଥିବ ସୁଖ
ନୁହେଁ ତାହା ତୁଲ ।୫୮।

ହେଲେ ଶ୍ରମ କରୁ ପାଦ
ପଥ ଚାଲିବାରେ,
ତୀର୍ଥ ଯାତ୍ରା ହେଉ ମୁଖ୍ୟ
ତାର ତାଲିକାରେ ।୫୯।

ବନ୍ଧୁ ଦର୍ଶନର ସୁଖ
ଲୁଚିଗଲେ ଥରେ,
ଅନ୍ୟସ୍ଥାନ ଗମନଟି
ଭଲ ଲାଗିବରେ ।୭୦।

ଆଖି, କାନ, ନାକ, ପାଟି
ପାଦ ଆଉ ପାଣି,
ସମସ୍ତ ଇନ୍ଦ୍ରିୟ ହେଲେ
ଏ କାମେ ଅଗ୍ରଣୀ । ୭୧ ।

ଆସ୍ତେ ଆସ୍ତେ କାମନାଟି
ହୋଇଯିବ ମ୍ଳାନ,
ଅନାସକ୍ତ ହେବ ଗାଢ଼
ଯିବ ଅଭିମାନ । ୭୨ ।

ବନ୍ଧୁ ସମର୍ପଣ ଭାବ
ହୋଇବ ଜାଗ୍ରତ,
ବ୍ରହ୍ମାନନ୍ଦ ସୁଖ ଆପେ
ହୋଇବ ପ୍ରାପତ ।୭୩।



ଶ୍ରୀ ଅମ୍ବରୀଷ ମହାରାଜ କପରି ନିଜ ଭକ୍ତିବଳରେ ଦୁର୍ବାସାଙ୍କ କୋପରୁ ରକ୍ଷା ପାଇଥିଲେ, ସେ କଥା ପୁରାଣ ପାଠକମାନେ ଜାଣନ୍ତି । ସେ ଯେପରି ସର୍ବେନ୍ଦ୍ରିୟ ଦ୍ୱାରା ଭକ୍ତିସାଧନା କରୁଥିଲେ, ନିମ୍ନ ଶ୍ଳୋକରୁ ତାହାର ସୂଚନା ମିଳେ । ଆମର ଏହି ପଦ୍ୟରେ ବର୍ଣ୍ଣିତ ଧାରା ତାହା ଠାରୁ ଭିନ୍ନ ନୁହେଁ ।

ସବୈ ମନଃ କୃଷ୍ଣ ପଦାର-ବିନ୍ଦୟୋ
ର୍ବଚାଂସି ବୈକୁଣ୍ଠ ଗୁଣାନୁ ବର୍ଣ୍ଣନେ
କରୌ ହରେ ର୍ମନ୍ଦିର ମାର୍ଜନାଦିଷୁ
ଶ୍ରୁତିଂ ଚକାରାଚ୍ୟୁତ ସତ୍କଥୋଦୟେ
ମୁକୁନ୍ଦ ଲିଙ୍ଗାଳୟ ଦର୍ଶନେ ଦୃଶୌ
ତଦ୍‌ଭୃତ୍ୟଗାତ୍ର ସ୍ପର୍ଶେଙ୍ଗ ସଙ୍ଗମ୍ ।
ଘ୍ରାଣଂଚ ତତ୍ ପାଦସରୋଜ ସୌରଭେ
ଶ୍ରୀମତ୍ତୁଳସ୍ୟା ରସନାଂ ତଦର୍ପିତେ
ପାଦୌ ହରେଃ କ୍ଷେତ୍ର ପଦାନୁସର୍ପଣେ
ଶିରୋ ହୃଷୀକେଶ ପଦାଭି ବନ୍ଦନେ
କାମଂଚ ଦାସ୍ୟେ ନ ତୁକାମ କାମ୍ୟୟା
ଯଥୋତ୍ତମ ଶ୍ଳୋକଜନାଶ୍ରୟା ରତିଃ ॥

( ଭା ୯ । ୪ । ୧୮-୨୦ )



# ହାକିମ

ହୁକୁମ ଦେବାରୁ ହାକିମ ବୋଲାଇ,
ଅଧସ୍ତନ କର୍ମୀ ପାଳନ କରଇ ।୧।
ନାହିଁ ତାହା ପାଇଁ ନିର୍ଦ୍ଦିଷ୍ଟ ସମୟ,
ଦିନ ରାତି ଥିଲେ ହୁକୁମର ହୁଅ ।୨।
ଅଧସ୍ତନ କର୍ମୀ ହୁଅଇ ଅତିଷ୍ଠ,
ଚାକର ରକ୍ଷଣେ ସହିଥାଏ କଷ୍ଟ ।୩।
ଉତ୍ତର ଦେବାର ନାହିଁ ତାର ଶକ୍ତି,
ଦେଲେ ଅକାରଣ ଆସଇ ବିପତ୍ତି ।୪।
ବଡ ଲୋକଙ୍କୁତ ନ ଥାଏ ଉତ୍ତର,
ନ ଥାଏ ନିଶୁଣି ପୁଣି ସ୍ୱର୍ଗପୁର ।୫।
ମାନ ଏଥି ମାତ୍ର ଗରିବ ଚାକର,
ସହେ ନିର୍ଯ୍ୟାତନା ରହେ ନିରୁତ୍ତର ।୬।
ହୁକୁମ ଦେବାର ଆଦବ କାଇଦା,
ଆଗେ ଶିଖିପାନ୍ତି ନୋହି ଅଦୁବିଧା ।୭।
କେତେ ହାକିମତ ଅଛନ୍ତି ଦେଶରେ,
ପୁରୁଣାଠୁ ନୂଆ ଶିଖେ ସହଜରେ ।୮।
ଦେଖା ଶିଖା ମାତ୍ର ରହିଛି ଚଳନ,
ସେ ପାଇଁ ଟ୍ରେନିଙ୍ଗ୍ ନୁହେଁ ପ୍ରୟୋଜନ ।୯।
ଅଧାଗିଲା ଭାଷା ମୋଟାଗଲା ମୁଣ୍ଡି,
ଦୋଷ ଦେଖା ଭାବ ତାଛଲ୍ୟ ଗୁହାଣି ।୧୦।

ହୁକୁମ ଦିଅନ୍ତି ଏପରି ଢଙ୍ଗରେ,
ଡରେ ଅବନତ ହେଉ, ଏ ଇଚ୍ଛାରେ । ୧୧ ।
ଗାଳି ମନ୍ଦ କିଛି ହେବକି ଶ୍ରବଣ,
ନାକୁଛି ହୁଅଇ ନିଶ୍ୱାସ ପବଣ । ୧୨ ।
ବୁଝୁ ବା ନ ବୁଝୁ ହୁକୁମ ପାଇଣ,
ତାମିଲ କରଣେ କରଇ ଗମନ । । ୧୩ ।
ତାମିଲରେ ରହେ ନାନା ଭୁଲ୍ ଭ୍ରାନ୍ତି,
ଗାଳି ସଙ୍ଗେ ଶୁଣେ କର୍କଶ କଟୂକ୍ତି । ୧୪ ।
ଅପାରଗ ବୋଲି ହୁଅନ୍ତି କଥିତ,
ନ ରହେ ସମ୍ମାନ ହୁଅଇ ନିନ୍ଦିତ । ୧୫ ।
ଦିନ, ମାସ, ବର୍ଷ ଗଲେ ଏହିପରି,
ପ୍ରମୋଶନ ବେଳ ଯାଏ ତା ଉତୁରି । ୧୬ ।
ଚରିଷ ଲିପିର ପ୍ରତିକୂଳ ଲେଖ,
ପ୍ରମୋଶନ ବାଟ କରିଦିଏ ବଙ୍କା । ୧୭ ।
ସମଦଶା ସବୁ ଅଧସ୍ତନଙ୍କର,
କେହି କେହି ଥାନ୍ତି ଗୃଲକ୍ ଚତୁର । ୧୮ ।
ଅନ୍ୟବାଟ ଧରି ହାକିମ ତୋଷନ୍ତି,
କରନ୍ତି କଥିତ ହୁଅନ୍ତି ନିପୁଣ । ୧୯ ।
ପ୍ରମୋଶନ ତାଙ୍କୁ ମିଳଇ ଝଟ,
ବରିଷ୍ଠ ଉପରେ ହୁଅନ୍ତି ଶ୍ରେଷ୍ଠ । ୨୦ ।
ହାକିମଙ୍କର ଏ କରମ ଗୃଭୁଷି,
କିଏ ଲଭି ମାରେ କେ ହୁଏ ଉଦାସି । ୨୧ ।
ହାକିମ ଅଛନ୍ତି ବିଭିନ୍ନ ପ୍ରକାର,
ଭିନ୍ନ ହାକିମଙ୍କ ଭିନ୍ନ କାରବାର । ୨୨ ।
ସର୍କାରୀ ନିୟମ ପାଞ୍ଜିରେ ରହିଲି,
ତାଙ୍କ ଖିଆଲରେ କରମ ହୁଅଇ । ୨୩ ।
କେତେ ହାକିମଙ୍କ କାମରେ ଶରଧା,
ମାତ୍ରବାନ କର୍ମୀ ଲଭନ୍ତି ସୁବିଧା । ୨୪ ।

ଆଉ କେତେ ଥାନ୍ତି କାମ ଯାହାଙ୍କର,
ବ୍ୟକ୍ତିଙ୍କ କାମ ଅଗ ସ୍ଥାନ ଦାଉ । ୨୫ ।
ତୁଷ୍ଟି ହେଲେ ଏଥେ ସମ୍ବର୍ଦ୍ଧନ ପାଇଁ,
ଅନୁଗ୍ରହ ଲଭରୁ ବଞ୍ଚିତ ହୁଅଇ । ୨୬ ।
କେତେକ ଥାଆନ୍ତି ଖୋସାମଦ ପ୍ରିୟ,
ଖୋସାମଦ ବାକ୍ୟେ ହୁଅନ୍ତି ତନ୍ମୟ । ୨୭ ।
ମିଷ୍ଟ ମଧୁମାଖ ପଛକୁ ରହଇ,
ଖୋସାମଦ ବାକ୍ୟେ ତତ୍ପର ହୁଅଇ । ୨୮ ।
କାହାପାଇଁ ବାମ କାହାକୁ ଡାହାଣ,
ହୁଅନ୍ତି ବଡ଼ର ହୋଇଛ ଏ ଗୁଣ । ୨୯ ।
ଦ୍ୱେଷ ଦଳାଦଳରେ ମାତନ୍ତି କେତେକ,
ଧନ ଉପାର୍ଜନ ଏକକ ଲକ୍ଷ । ୩୦ ।
ଏ ଦଳରେ ଯିଏ ହୁଏ ସହାୟକ,
ଲଭଇ ସୁବିଧା ହୁଏ ପାର୍ଟିଲୋକ । ୩୧ ।
କର୍ମନିଷ୍ଠା ପୁଣି ମିତନିଷ୍ଠା ଭାବ,
ଜ୍ଞାନ ନିଷ୍ଠା ସଙ୍ଗେ ସନ୍ତୋଷ ସ୍ୱଭାବ । ୩୨ ।
ଏକାଧାରେ ଧର ଏ ସ୍ତର ସଦ୍‌ଗୁଣ,
ଥିବାର ହାକିମ ନୁହେଁ ଅନୁମାନ । ୩୩ ।
ଗଣତନ୍ତ୍ର ରାଜ୍ୟେ ମୁଖ୍ୟ ରାଜନୀତି,
ସବୁଠାରେ ତାର ଚଳଇ କାଠିତି । ୩୪ ।
ଶାସନ ପ୍ରକ୍ରିୟା ସମାଜ ଚଳଣି,
ଅର୍ଥନୀତି ଆଦି ଯେତେକ କରଣି । ୩୫ ।
ରାଜନୀତି ଦ୍ୱାରା ସବୁ ନିୟନ୍ତ୍ରିତ,
ହାକିମ ଅମଲା ମିଛକୁ ଜଡ଼ିତ । ୩୬ ।
ନାହିଁ ଗୁଣ ତାର ହେବ ମିତନିଷ୍ଠ,
ଅବା କର୍ମନିଷ୍ଠ ହୋଇବ ସନ୍ତୋଷ । ୩୭ ।
ଜ୍ଞାନନିଷ୍ଠ ହୋଇ ଲଭ କିଛି ନାହିଁ,
ଜ୍ଞାନ ଉପଯୋଗ କେବେ କି ହୁଅଇ ? । ୩୮ ।

ମନ୍ତ୍ରୀଙ୍କ ଆଦେଶ ମନ୍ତ୍ରୀଙ୍କର ଇଚ୍ଛା,
ହେଉ ନୀତିହୀନ ନ ହେଉ ସଦିଚ୍ଛା ।୩୯।
ପାଳନରେ ଦ୍ୱିଧା କରିଲେ ପ୍ରକାଶ,
ଅବିଳମ୍ବେ ଘଟିଥାଏ ସର୍ବନାଶ ।୪୦।
ଯେତେ ହାଁଜୀ ହାଁଜୀ ଯେ କରି ପାରିଲା,
ମନ୍ତ୍ରୀ ପାଖେ ସେତେ ପାରିବାର ହେଲା ।୪୧।
ଦଳ ସ୍ୱାର୍ଥ ପୁଣି ସ୍ୱକୀୟ ସଂସ୍ଥିତି,
କେବଳ ବିଗୁର କରେ ରାଜନୀତି ।୪୨।
ନୀତି ନିୟମର ଯେତେ ଉଲଙ୍ଘନ,
ହେଉଲ ସେଥିପାଇଁ ନୁହଁଇ ଶୋଚନ ।୪୩।
ନୀତିହୀନ ଯେବେ ହୁଏ ରାଜନୀତି,
ନୀତି ପାଳନରେ କିଏ ଦେବ ମତି ? ।୪୪।
ଧର୍ମ ଅଟେ ସଦା ରାଜା ଅନୁଗତ,
ରାଜା ଭ୍ରଷ୍ଟ ହେଲେ ପ୍ରଜା କି ନୀତିସ୍ଥ ? ।୪୫।
ଗଣତନ୍ତ୍ର ରାଜ୍ୟେ ରାଜା ସିନା ନାହିଁ,
ମନ୍ତ୍ରୀ ତା ଆସନ ମଣ୍ଡନ କରଇ ।୪୬।
ସମଗ୍ର ସମାଜ ହୁଏ କଳୁଷିତ,
ହାକିମ ଅମଲା ବୃଥାରେ ନିନ୍ଦିତ ।୪୭।
ନୁହନ୍ତି ସେମାନେ ନୀରବ ଦର୍ଶକ,
ନିଜ କାମ କରି ବୋଲନ୍ତି ଗୁଲ୍କ ।୪୮।



# କଳ୍ପନା ବିଳାସ

( କଳ୍ପନା ବିଳାସ ଗୋଟିଏ ଦୁଃଦେ ପ୍ରବୃତ୍ତି । ଏହା ଲୋକକୁ ବାସ୍ତବତା ଠାରୁ ଦୂରେଇ ନଏ । )

ମାନବେକ ଥିଲା ତାର ଥିଲେ ଚାରି ପୁତ୍ର,
ଏକକୁ ଆରେକ ପୁଣି ସର୍ବେ ଗୁଣବନ୍ତ । ୧ ।

ଭାବିଲା ମୋ ଚାରିପୁତ୍ର ନୁହଁନ୍ତି ସାମାନ୍ୟ,
ଶ୍ରେଷ୍ଠ ରତ୍ନ ଫଳ ରୂପେ ତାଙ୍କ ଆଗମନ । ୨ ।

ପୂର୍ବ ଜନ୍ମ ସୁକୃତର ଫଳରୂପେ ବିହି
ଚତୁର୍ବର୍ଗ ଫଳ ମୋତେ ଦାନ କରିଛଇଁ । ୩ ।

ଭାବି ମନରେ ଏପରି ହେଲା ଉଲ୍ଲସିତ,
ନୂତନ ନାମରେ ତାଙ୍କୁ କଲାକ ଚିହ୍ନିତ । ୪ ।

ବଡ ପୁଅ 'ଧର୍ମ' ସାନ ବୋଲାଇଲା 'ଅର୍ଥ',
ତୃତୀୟର ନାମ 'କାମ' 'ମୋକ୍ଷ' ହିଁ ଚତୁର୍ଥ । ୫ ।

ସ୍ୱପ୍ନରେ ସୁଖରେ ତାର କଟୁଥାଏ ଦିନ,
ସହରରେ ଘର ଖଣ୍ଡେ ପାଇଁ କଲା ମନ । ୬ ।

ବଡ ପାଖେ ମନୋଭାବ କଲାକ ପ୍ରକାଶ,
ବଡ଼କୁ ଏ କଥା ମାତ୍ର ନ ହେଲା ଉଲ୍ଲାସ । ୭ ।

ଜମି କିଣା ଘର କରା କଥାରୁ ନିବୃତ୍ତ,
କରିବା ପାଇଁ ବାପକୁ ବୁଝାଏ ବହୁତ । ୮ ।

ଅଣବେକ୍ଷା ହୋଇ ଯିଏ ଚଳେ ଏ ଧରାରେ,
ସୁଖ ନୁହେଁ ଦୁଃଖ ତାର ଗୋଡ଼ାଏ ପଛରେ । ୯ ।
ଧନ ସଂପତ୍ତିରେ ଯାର ମନ ମଜ୍ଜିଯାଏ,
ନ୍ୟାୟ ଅନ୍ୟାୟ ବିଚାର ତାକୁ ଛାଡ଼ିଯାଏ । ୧୦ ।
ଅହଂ ଭାବ ବୃଦ୍ଧି ହୁଏ ମମତା ଜାଗଇ,
ଅତୃପ୍ତି ଜ୍ୱାଳାରେ ସିଏ ଦଗ୍‌ଧ ହୋଇଥାଇ । ୧୧ ।
ଧର୍ମ ଛାଡ଼ି ଅଧର୍ମରେ ସଦା ସେ ଗମଇ,
ଇହ ପର ସୁଖ ତାର ସବୁ ନଷ୍ଟ ହୋଇ । ୧୨ ।
ଖାଇପିଇ ଆମେ ବାପା ରହୁଛେ ଭଲରେ,
ଟଙ୍କା ଦେଲେ ଡାକ୍ତର ମିଳେ ସବୁଠାରେ । ୧୩ ।
ଚନ୍ତାତକ କଷ୍ଟ ନାହିଁ ନିର୍ମଳ ଜୀବନ,
ଛାଡ଼ କଥା ଲୋକମାନେ ପୂରଉଛ ମନ । ୧୪ ।
'ମୁଁ' ଓ 'ମୋର' ଭାବ ନୁହେଁ ସୁନ୍ଦର ତୁମକୁ,
ଯେପରି ଚଳୁଛ ଏବେ ଚଳିଯା ଆଗକୁ । ୧୫ ।
ଭୁଲିଲ କି ବାପା ତୁମେ କବିଙ୍କର ଲେଖା,
ପଢ଼ିଲ ବେଳେ ବୁଝାଇ ଦେଇଅଛ ଶିକ୍ଷା । ୧୬ ।
ମନେ ପକାଇ ଦେଉଛି ଶୁଣ ତାହା ଏହୁ,
ଶୁଣିଲେ ସେ ଭାବ, ଭ୍ରାନ୍ତି ଯିବ ଦୂରହୋଇ । ୧୭ ।
"ଧର୍ମ ଏକା ସିନା ଅଟେ ମହତ ଧଣିଆ,
ଆଉ ସବୁ କଥା ଜାଣ ଅଟେଇ ଦନିଆ" । ୧୮ ।
ଧର୍ମ ଆଶ୍ରୟରେ ବାପା କଟାଅ ଜୀବନ,
ଧାର୍ମିକକୁ ଧର୍ମ ସଦା କରଇ ରକ୍ଷଣ । ୧୯ ।
ଶୁଣି ବାପ ପୁଅ ଭାଷ୍ୟ ହୋଇଲ ତୃପତ,
ଜମି ଘର କଥା ମନୁ ତେଜିଲ ତୁରନ୍ତ । ୨୦ ।
ଭାବିଲ ନାମକରଣ ହୋଇଛି ସାର୍ଥକ,
ସ୍ୱୟଂ ଧର୍ମ ପୁତ୍ରରୂପେ ମୋ କୋଳେ ଜାତକ । ୨୧ ।
ବଡ଼ ପୁଅ ଆଶ୍ରୟରେ ଭଡ଼ାଘରେ ଦିନ,
କଟାଇଲ ବାପ ହୋଇ ଏକାଗ୍ରନ ମନ । ୨୨ ।

କ୍ରମେ ସାନପୁଅ କର୍ମ ବାହେଲ ହୋଇଲା,
ଥିବା ଘର ନିନ୍ଦ ବଡ ଘରେ ଇଚ୍ଛା କଲା । ୨୩ ।
ବାପ କିନ୍ତୁ ଏ କଥାରେ ନୋହିଲା ସମ୍ମତ,
ଗୃହର ଘରକୁ ଯିବା ନୁହଇଁ ଉଚିତ । ୨୪ ।
ବଦଳ ହେଲେ ପୁଅର ଘର ଛାଡ଼ି ଯିବ,
ସେତେବେଳେ ବାପ ଦୁଃଖ କଏ ବୁଧାଇବ । ୨୫ ।
ଥିବା ଘର ଶ୍ରେଷ୍ଠ ଘର, ଭଡ଼ା ଅଟେ ଅଳ୍ପ,
ଛାଡ଼ିଲେ ତାହାକୁ ଆଉ ନମିଳେ ବିକଳ୍ପ । ୨୬ ।
ପୁଅ କିନ୍ତୁ ଏକଜିଦ୍ ବଡ଼ ଘରେ ଯିବ,
ଗୃହର ଘରଟି ତାହା ଭଡ଼ା ନ ଲାଗିବ । ୨୭ ।
ଥିବା ଘର ଛାଡ଼ ଦେଇ ସେ ଘରେ ରହିଲେ,
ଏବେ ଦେଉଥିବା ଭଡ଼ା ସଞ୍ଚିହେବ ଭଲେ । ୨୮ ।
ଅର୍ଥପ୍ରାପ୍ତି ଯୋଗ ବାପା ରହିଛି ତୁମକୁ,
କହିଲା ଏପରି, ଯାହା ଘେନିବ ମନକୁ । ୨୯ ।
ତଥାପି ବାପର ନ ହୋଇଲା ମନବୋଧ,
ବଡ଼ ପୁଅକୁ ପ୍ରେରଣ କରିଲା ସମ୍ବାଦ । ୩୦ ।
ବଡ ପୁଅ ଯା କହିଲା ତାହା ଏହିପରି,
ଶୁଣି ବାପା ମନୁ ଗଲା ସନ୍ଦେହ ଉତ୍ତୁରି । ୩୧ ।
"ପୁଅ କରୁଅଛି ତାର ସୁଖର ସନ୍ଧାନ,
ବାପ କର୍ମା କରିବ ସେଥିରେ ବାଧାଦାନ । ୩୨ ।
ବାପ ଅନୁଶଧା ବାପ ଭୁଲାଇବ ସିନା,
ପୁଅ କର୍ମା ବାପ ପାଇଁ ତେଜିବ ବାସନା । ୩୩ ।
ଭାବିଲା ବାପ ଏ ପୁଅ ଧର୍ମ ନାମ ବହି,
ଅଧର୍ମ କଥା ତା ତୁଣ୍ଡେ କେବେ ନ ଆସଇ । ୩୪ ।
ବିଭୁ ପଦେ କୃତଜ୍ଞତା ଜ୍ଞାପିଲା ପୁନଶ୍ଚ,
ଦୟାବହି ଧର୍ମପ୍ରାପ୍ତି ମୋତେ କରାଇଛ । ୩୫ ।
ବାପ ବି ସ୍ମରଣ କଲା ପୁଅ ନାମ 'ଅର୍ଥ',
ଶୂନ୍ୟରୁ ଅର୍ଥ ଆଗମ କରି ପାରୁଛିତ । ୩୬ ।

ନଷ୍ଟେ 'ଅର୍ଥ' ପ୍ରାପ୍ତ ମୋତେ ହେଲା ଏବେ ଜାଣ,
କୃତ କୃତ୍ୟ ହୋଇ ଶୂନ୍ୟେ କଲା ନମ ନମ । ୩୭ ।
ନୂତନ ଗୃହେ ପ୍ରବେଶ ହେଲା ଯଥା କାଳେ,
ଆନନ୍ଦରେ ଦିନ କଟିଗଲା ଅବହେଳେ । ୩୮ ।
କାଳକ୍ରମେ ପୁଅଟିର ମନ ବଦଳିଲା,
ବାପ ପ୍ରତି ଅହେତୁକ ବିତୃଷ୍ଣା ଜାଗିଲା । ୩୯ ।
ଅତିଷ୍ଠ ହୋଇଲା ବାପ ପୁତ ପାଖେ ରହି,
ପୁତ୍ର ଘର ଛାଡ଼ିବାକୁ ବାଧ ସେ ହୁଅଇ । ୪୦ ।
ଷଡ଼ାକ୍ଷର ମନ୍ତ୍ର ଜପ ଛଡ଼ା ଅନ୍ୟ ପନ୍ଥା,
ନ ଦିଶଇ ବାପକୁ ସେ ଭୋଗଇ ହାନସ୍ତା । ୪୧ ।
ନାହିଁ ଘର ନାହିଁ ଆୟୁ ଦାୟିତ୍ୱ ବହୁତ,
କପର ଭୁଲାଇବ ସେ ହୁଅଙ୍କ ଭାବତ । ୪୨ ।
ଭାବଥିଲା ଚତୁର୍ବର୍ଗ ଫଳ ତାକୁ ବହି,
ଦେଇଛନ୍ତି ଖୁସି ହୋଇ ଭାଗ୍ୟବାନ ସେହି । ୪୩ ।
ଚତୁର୍ବର୍ଗ ଫଳ ଏବେ ଓଲଟା ହୋଇଲା,
'ଧର୍ମ' ନାମେ ଘର ଜମି କଥା ଛାଡ଼ିଗଲା । ୪୪ ।
'ଅର୍ଥ' ନାମେ ଭଣ୍ଡାଘର ଖସିଲା ହାତରୁ,
'କାମ' 'ମୋକ୍ଷ' କଥା ଆଉ କଅଣ ଦୂରରୁ । ୪୫ ।
ଦୁଃଖ ହାନସ୍ତାରେ ବାପ କାଟୁଥାଏ କାଳ,
ତୃଷ୍ଣାପୁ ପୁତ୍ରର ପାଳ ପଡ଼ିଲା ଏଥର । ୪୬ ।
ବାପର ଅବସ୍ଥା ଦେଖି ହେଲା ଦୁଃଖାତୁର,
କହିଲା ଏପରି ନିଃସ୍ୱ ଜଗତେ ବିରଳ । ୪୭ ।
କୌଣସି କାମନା ତୁମ ହୋଇନ ପୂରଣ,
ନାହିଁ ଘର ନାହିଁ ଜମି ନାହିଁ ଧନମାନ । ୪୮ ।
ବେଳ ଆଉ ନାହିଁ ସୁଖ ଭୋଗିବାର ପାଇଁ,
ଦୁଃଖ ଭୋଗିବାର ପାଇଁ ବଞ୍ଚିକ ଅଛଇ । ୪୯ ।
ଭାବିଲା ବାପ ପ୍ରକୃତ କଥା ସେ କହୁଛି,
ସୁଖ ତାର ଭାଗ୍ୟେ ନାହିଁ ସେ କମା ବଞ୍ଚୁଛି । ୫୦ ।

ଏ ପୁଅର ନାମ ବାପ ରଖିଥିଲ 'କାମ',<br>
ପ୍ରଥମ ଦ୍ୱିତୀୟ ପରେ ଏ ବି ହେଲ ବାମ । ୫୧ ।<br>
ଅଳପ ଦିନରେ ବାପ ଛାଡ଼ିଲ ପରାଣ,<br>
ଚତୁର୍ଥ ତା କାମ ଠିକ୍ କରିଲ ପୂରଣ । ୫୨ ।<br>
ଦେଖିଲ ସର୍ବର ଶୂନ୍ୟ ନାମଟି ଯା ଅଛି,<br>
କାହିଁକି ସେତିକି ଥିବ ଦିଅ ତାକୁ ପୋଛି । ୫୩ ।<br>
ଖାଞ୍ଜି ପତ୍ର ଯହିଁ ବାପ ନାମ ଲେଖା ଥିଲ,<br>
ଅଗ୍ନି ମୁଖେ ଦେଇ ସ୍ୱାହା ଉଚ୍ଚାରଣ କଲ । ୫୪ ।<br>
ଇହସତ୍ତ୍ୱ ପୂର୍ଣ୍ଣରୂପେ ନୋହିଲେ ବିଲୋପ,<br>
ପରମାତ୍ମା ମିଳନଟି ହୁଏ ନାହିଁ ପ୍ରାପ୍ୟ । ୫୫ ।<br>
ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳ,<br>
ଲଭିଲ ବୋଲି ଯା ବାପ କଲା ଅଟକଳ । ୫୬ ।<br>
ବିକୃତ କମ୍ପାଇଁ ହେଲ ହେଉ ଅନୁଧାନ,<br>
ଜଣା ପଡ଼ିପାରେ ହେଲେ ଜ୍ୟୋତିଷ ଗଣନ । ୫୭ ।<br>
ଚତୁର୍ବର୍ଗ ଫଳ ମିଳେ ଯାହାକୁ ସଂସାରେ,<br>
ଧନ ସମ୍ପଦ ଭୋଗରେ ତାର ଦିନ ସରେ । ୫୮ ।<br>
ସ୍ୱଭାବେ ଧର୍ମ କାମରେ ରତ ସେ ହୁଅଇ,<br>
ଇହପରେ ସ୍ୱର୍ଗ ଗତି ଲଭ କରିଥାଇ । ୫୯ ।<br>
କିନ୍ତୁ ନ ଥାଇ ଭାବିଲ ଚତୁର୍ବର୍ଗ ଲାଭ,<br>
କଳ୍ପନା ବିଳାସ ଛଡ଼ା ଅନ୍ୟ କି ବୋଲିବ ? ।୬୦।<br>
ଯେପରି ଭାବେ ବିତିଲା ଆହାର ଜୀବନ,<br>
ଅସ୍ୱାଭାବିକତା ତହିଁ ନୁହଁଇ ଦର୍ଶନ । ୬୧ ।<br>
କଳ୍ପନା ବିଳାସୀ ଲୋକ ଥାଆନ୍ତି ଅନେକ,<br>
କଳ୍ପନାରେ ଭାସିଯାଇ ଲଭନ୍ତି ପୁଲକ । ୬୨ ।<br>
ଅବାସ୍ତବ କଳ୍ପନାକି ହୁଅଇ ସଫଳ,<br>
ମନସ୍ତାପ ଭୋଗିବାଟି ହୋଇଥାଏ ସାର । ୬୩ ।



# ସଂପତ୍ତି ସଂଗ୍ରହ

( ବଡ଼ ସାନ ନିର୍ବିଶେଷରେ କର୍ମଚାରୀଗୋଷ୍ଠୀ ଅନ୍ୟାୟ ନ କଲେ ବା ଅତିରିକ୍ତ ଭାବରେ ବ୍ୟୟ ସଙ୍କୋଚ ନ କଲେ ସଂପତ୍ତିବାନ ନ ହୋଇ ପାରିବା କଥାକୁ କେହି କିଅଣ ଅସ୍ୱୀକାର କରିବ ? )

ଅଳପ ପାଠୁଆ ଷ୍ଟ୍ରେଟିଆ ଚାକର,
ଦରମା ସର୍ବସ୍ୱ ନଥାଏ ଉଦ୍ବୃର ।୧।

କୁଟୁମ୍ବ ଯୋଜନା କରିନି ବାପୁଡ଼ା,
ଚାରିଟି ସନ୍ତାନ ସଙ୍ଗେ ବାପ ବୁଢ଼ା ।୨।

ଘରଭଡ଼ା ଯାହା ଦିଏ ସରକାର,
ଘରଭଡ଼ା ପଡ଼େ ଚତୁର୍ଗୁଣ ତାର ।୩।

ପହିଲା ଆଗରୁ ଚାଲଇ ହିସାବ,
ଆସନ୍ତା ମାସର ବଜେଟ ଚରବ ।୪।

ଆୟ ତ ନିର୍ଦ୍ଦିଷ୍ଟ ରହେ ସଦାକାଳେ,
ବ୍ୟୟ ହାତ ଗୋଡ଼ ଲମ୍ବି ସିନା ଚାଲେ ।୫।

ନୂତନ ବ୍ୟୟର ସୂଚନା ଆସିଲେ,
ଛୁନିଆ ପଶଇ ବାପୁଡ଼ା ପ୍ରାଣରେ ।୬।

ସାଙ୍ଗସାଥୀ ତାର ସମଦଶାପନ୍ନ,
ଉଧାର କରଜ ମିଳିବା ସ୍ୱପନ ।୭।

ଭବିଷ୍ୟ ପାଣ୍ଠି ଏକ ମହାଜନ,
ଶାଗ ବାଡ଼ି ପରି କରେ ତା କର୍ତ୍ତନ ।୮।

ଧନ୍ଦବାନ୍ଧ ହୋଇ ମାସ ମୁଣ୍ଡ ଯାଏ,
କଷ୍ଟେ ମଷ୍ଟେ ଦିନ କଟାଇଣ ଥାଏ ।୯।
କମ୍ୟୁନିଷ୍ଟ ମାନ୍ତ ଧରଇ ବଗୁଲି,
ଛୁଆ ଝିରଟାଙ୍କ ମୁହେଁ ବାଢ଼ି ଝୋଲି ।୧୦।
ଭଲଟିର ମନ୍ଦରେ ପୂନେଇ ପର୍ବରେ,
ଅଣ୍ଟ ନଅଣ୍ଟରେ ଅବା ରୋଗ ହେଲେ ।୧୧।
କୌଣସି ଦରବ କରିବା ପାଇଁ,
ଅଧିକାର ତାଙ୍କ ସଦା ଲୋପ ହୋଇ ।୧୨।
ମନମରା ହୋଇ କାଟନ୍ତି ଦିବସ,
ନାହିଁ ହସ ନାହିଁ ଆନନ୍ଦ ଉଲ୍ଲାସ ।୧୩।
ଫାଟିଶା ଘରର ଚଟାଟ ଚକଜଣି,
ଦେଖିଲେ ମନରେ ଲାଗଇ କଷଣ ।୧୪।
କେଉଁ ଆସବାବ ନାହିଁ ତାଙ୍କ ଘରେ,
ବଡ ଗୃହକର୍ତ୍ତା ପଡ଼ିବେ ପଛରେ ।୧୫।
ସମ ଗୃହକର୍ତ୍ତେ ସମ ରୋଜଗାର,
ପରିବାର ଶ୍ରେଷ୍ଠ ପ୍ରଭେଦ ମାତର ।୧୬।
ଅମିତ ଆପୁର ନାହିଁ ସମ୍ଭାବନା,
ସୂହଟି କେଉଁଠି ପଡ଼ୋ ନାହିଁ ଜଣା ।୧୭।
ମନଯୋଗ ଦେଇ ଭିତର ଚଳଣି,
ଅନୁଧ୍ୟାନ କଲା ଲଗାଇ ଘରଣୀ ।୧୮।
ମିଳା ମିଶା ଟିକେ ଅଧିକ ହୋଇଲା,
ଝିବର୍ଗଙ୍କି ସବୁ ଜଣା ପଡଲେ ।୧୯।
ଖର୍ଚ୍ଚ ଦିଗେ ତାଙ୍କ ନାହିଁ ଜମାମନ,
ଯାହା ଆୟ ସବୁ ସଞ୍ଚୟେ ଗଣେ ।୨୦।
ଖାଆନ୍ତୁ ନଖାନ୍ତୁ ଦିନ କଟିଯାଉ,
ବାହାର ଦେଖାଣି ଲୁଗାପଟା ଥାଉ ।୨୧।
ଯୋଜନା ପ୍ରକାରେ ସଞ୍ଚିଥିବା ବିତ୍ତ,
ସ୍ଥାୟୀ ସମ୍ପଦରେ ହୁଏ ପରିଣତ ।୨୨।

ଶୋଫା, ପଲଙ୍କଠୁ ଷ୍ଟୁଟର, ଡ଼ାଇନିଂ
ଟେବୁଲ ଚେଆର ସାଙ୍ଗକୁ ଡ୍ରେସିଂ । ୨୩ ।
ଆଲମାରୀ, ଫ୍ରିଜ୍, ଟିଭି, ଟେପ୍ ଆଦି,
ଉପକରଣରେ ଘରକୁ ସମ୍ଭାଦି । ୨୪ ।
ଆଖି ଏବେ ଯାଏ ଘର ଜମି ପାଇଁ,
ଶୁଣି ଆଚମ୍ଭିତ ବାପୁଡ଼ା ହୁଅଇ । ୨୫ ।
ପେଟ ପାଟି କାଟି ଦଶ ବର୍ଷ କାଳ
ସମ୍ପତ୍ତି ଏତକ କରିଅଛୁ ଠୁଳ । ୨୬ ।
ନାହିଁ ଏଥେ କିଛି ତାର ବାହାଦୁରୀ,
ନୁହଁଇ ସେ ପୁଣ ବଡ ରୋଜଗାରୀ । ୨୭ ।
କିଏ କେଉଁଥିରେ ଦିଅଇ ପ୍ରାଧାନ୍ୟ,
ମୂଲ୍ୟବୋଧ ନୁହେଁ ସଭିଁଙ୍କ ସମାନ । ୨୮ ।
ଖାଇବା ପିନ୍ଧିବା ସଙ୍ଗେ ପଢା ଦର୍କା।
ରୋଗକୁ ଔଷଧ ପୁଣି ବନ୍ଧୁ ଚର୍ଚ୍ଚା । ୨୯ ।
ଆୟୁତ ନଥିଲେ ଏସବୁ ପାଇଁକି
ଆସବାବ କଥା ଚିନ୍ତିବ କାହିଁକି ? ।୩୦ ।
ତାହା ଦରମାର ରୁକରିଆ ପାଇଁ,
ଫ୍ରିଜ୍ ଆଦି ଚିନ୍ତା ନବୋଧ ଅଟଇ । ୩୧ ।
ମାତ୍ର ଯାହା ମନେ ଏ ଚିନ୍ତା ପ୍ରବଳ,
ସମ୍ପତ୍ତି ସଂଗ୍ରହେ ସର୍ବଦା ବ୍ୟାକୁଳ । ୩୨ ।
ସମ୍ପତ୍ତି ପାଣ୍ଠିରେ ଯେ ଧନ ପଡ଼ଇ,
ଅନ୍ୟକାମେ ତାହା କେବେ ନ ଲାଗଇ । ୩୩ ।
ଅର୍ଥକୁ ରୂହାଁଣ ସମ୍ପତ୍ତି ସଂଗ୍ରହ
ଗୋଟି ଗୋଟି କରି ରୁଲେ ସମାନ୍ୱୟ । ୩୪ ।
ସମ୍ପତ୍ତି ନିଶାରେ ଅନ୍ୟ କିଛି ଚିନ୍ତା,
ଛୁଏନାଁ ମନକୁ ସଦା ଉତ୍ଫୁଲ୍ଲିତା । ୩୫ ।
ମୂଲ୍ୟାୟନ କଲେ ସମ୍ପତ୍ତି ସକଳ
ଦଶବର୍ଷେ ଯାହା ହୋଇ ଅଛି ଠୁଳ । ୩୬ ।

ସେହି ପରିମାଣ ଅର୍ଥ ଆୟ କରେ,
ବନ୍ଧୁ ଚରଣରେ ଖର୍ଚ୍ଚ କରିଥାଏ । ୩୭ ।
ଅବା ଅଣ୍ଡା ଖାଇ ଦେଇଥାଏ ସାରି,
ନମ୍ର ଆବଶ୍ୟକ ତାହାକୁ ବଢ଼ୁର । ୩୮ ।
ଶ୍ରେଷ୍ଠ ଆୟ ନାହିଁ ସଂପଦ ସଂଗ୍ରହ,
ବ୍ୟୟ କୌଶଳ ଏକକ ଉପାୟ । ୩୯ ।
ଟଙ୍କାର କି ତାର ଅଧିକା ଶକତି,
ବଜାରୁ କଣିଲେ ଅଧିକା ସଂପତ୍ତି । ୪୦ ।
ସମାନ ଚାକର ସମ ରୋଜଗାର,
ଜଣେ ଶୂନ୍ୟ, ଅନ୍ୟ ସମ୍ପଦେ ଭରପୁର । ୪୧ ।
ଦେଖି ଏ ଅବସ୍ଥା ମନ ହୁଏ ଭଣା,
ବୁଝେଁ କନ୍ତୁ ଏହା ଉଚିତ ଧାରଣା । ୪୨ ।
ଖର୍ଚ୍ଚ କାଟ କରି ଅର୍ଜିଲେ ସଂପତ୍ତି,
ମିଳେନା ସମ୍ମାନ କୃପଣ ବୋଲନ୍ତି । ୪୩ ।
ଚଳଣିରେ ପୁଣି ହୁଏ ଯେତେ କଷ୍ଟ,
ବସ୍ତୁପ୍ରେମୀ ସିନା ସହଜେ ସମର୍ଥ । ୪୪ ।
ଅନ୍ୟ ଠାରୁ ଦେଖି ସ୍ୱରୁଚି ବଢ଼ୁଛି,
କର୍ମ ଆଚରିଲେ ହୁଏ ନାହିଁ ସିଦ୍ଧି । ୪୫ ।
ସବୁ ଚେଷ୍ଟା କରି ବଣିର ଚାକର,
ଶୁଣିନି କି କେବେ ଗାନ୍ଧି ହୋଇବାର ? । ୪୬ ।
ସଂପତ୍ତି ପାଇଁକି ଦୁଇଟି ଉପାୟ,
ଖର୍ଚ୍ଚ କାଟ, ଆନ ବେନସୂମ ଆୟ । ୪୭ ।
ସମ୍ପତ୍ତି ଲାଳସା ଯା ମନେ ଜାଗଇ,
ରୁଚି ଅନୁସାରେ ଉପାୟ ଧରଇ । ୪୮ ।
ଉଭୟକୁ ତ୍ୟଜେ ଯେ ଖିଆଲି ହୋଇ,
ସଂପଦ ତା ପାଇଁ ସ୍ୱପ୍ନ ହୋଇଥାଇ । ୪୯ ।
ଭାବ ନାହିଁ ଶ୍ରେଷ୍ଠ ଚାକିରିଆ ବୋଲି,
ସମ୍ପଦ ସଂଗ୍ରହେ ଅସମର୍ଥ ହେଲି । ୫୦ ।

ବଡ ଗୃକରିଆ ଅବସ୍ଥା କି ଭିନ୍ନ,
ସଂପଦ ପାଇଁକି ବଳଥାଏ ଧନ ? ।୫୧।
ଜୀବନ ଜଂଜାଳ ଭୁଲିଇବା ପାଇଁ,
ଦରମାର ସୀମା ଧାର୍ଯ୍ୟ ହୋଇଥାଇ ।୫୨।
କର୍ମ ଭେଦେ ତାହା ଫରକ ହୁଅଇ,
ଉଚ୍ଚ କର୍ମୀ ଉଚ୍ଚ ବେତନ ଭୋଗଇ ।୫୩।
ବଡ ଦରମାର ବଡ଼ ଖର୍ଚ୍ଚ ଧାର,
ସ୍ୱଭାବେ ହୁଅଇ, ନାହିଁ ଅନ୍ୟଗୃସ ।୫୪।
କି ବଡ଼ କି ସାନ ନଅଣ୍ଟର ଜ୍ୱାଳା,
ଘୁଞ୍ଚେନ କାହାକୁ ବ୍ୟୟକୁଣ୍ଡ ଛଡ଼ା ।୫୫।
ବଡ଼ କର୍ମଗୃଷ୍ଟ ହେଲେ କି ହୋଇବ,
ଖର୍ଚ୍ଚକାଟ ଯେବେ କରି ନ ପାରିବ ।୫୬।
ଅନ୍ୟାୟରେ ଯେବେ ନାହିଁ ଧନାଗମ,
ସଂପତ୍ତି କଳ୍ପନା ଆକାଶ କୁସୁମ ।୫୭।
ସଂପଦ ସଂଗ୍ରହ ପାଇଁ ଯେବେ ଧନ,
ନବକୃଷ୍ଟ ଦୁଃଖେ ନ ପୂରଅ ମନ ।୫୮।
ସଂପତ୍ତି ଲାଳସା ଜାଗିଲେ ମନରେ,
ଦରମାରୁ ସଞ୍ଚ କରି ନ ପାରିଲେ ।୫୯।
ଅନ୍ୟାୟରେ ଧନ ଆହରଣ ପାଇଁ;
ମନରେ ପ୍ରେରଣା ସୃଷ୍ଟି ହୋଇଥାଇ ।୬୦।
ସବୁ ସଦ୍‌ଚିନ୍ତା ମନୁ ଘୁଞ୍ଚିଯାଇ,
ବିବେକ ତାଡ଼ନା ହାର ମାନିଥାଇ ।୬୧।
ଦୁର୍ନୀତି କରୁଛି ବୋଲି ନିନ୍ଦାବାଣୀ,
ମୁଣ୍ଡପାତି ସହିବାକୁ ହୁଏ ପୁଣି ।୬୨।
ଉଚ୍ଚ ପାଠ ପଢ଼ା ଉଚ୍ଚାସନ ପାଇଁ,
ଗରବ ସେବେଳେ ବିଲୁପ୍ତ ହୁଅଇ ।୬୩।
ପେଟ ପାଟି କାଟି କୁହଥେ ନଯାଇ,
ସମ୍ପତ୍ତି ଯେ କରେ ତାଠୁ ହୀନ ହୋଇ ।୬୪।

ସଂପତ୍ତି ଯୋଗରେ ସମାଜେ ପ୍ରାଧାନ୍ୟ,
ବଢ଼ିଥାଏ ଲୋକେ ଦେଇଥାନ୍ତି ମାନ୍ୟ । ୬୫ ।
ମାତ୍ର ଅନ୍ୟାୟରେ କଲେ ତା ଅର୍ଜନ,
ଅବା ବ୍ୟୟ କର ଅନ୍ତ ସଙ୍କୋଚନ । ୬୬ ।
ମିଳେ ନା ସମ୍ମାନ ଭାବ ଦେଖ ମନେ,
ଅନ୍ୟାୟୀ, କୃପଣ କହୁଥାନ୍ତି ଜନେ । ୬୭ ।
ଯୋଗ୍ୟତା, ଗୁଣର ବଳେ ଯେ ସମ୍ମାନ,
ନ ହୋଇ ଉଜ୍ଜ୍ୱଳ ହୋଇଥାଏ ମ୍ଳାନ । ୬୮ ।
ନିସମ୍ପତ୍ତି ପୁଣି ଅଭାବୀ ଲୋକଙ୍କ,
ସଂଖ୍ୟା ସମାଜରେ ଅଧାରୁ ଅଧିକ । ୬୯ ।
ଯେଉଁଠି ଦେଖିବ ସେମାନଙ୍କ ଦଳ,
କଥା ପ୍ରସଙ୍ଗରେ ସମ୍ପତ୍ତିଆଙ୍କର । ୭୦ ।
ନିନ୍ଦା କରୁଥାନ୍ତି, ଫଳରେ ଯାହାର,
ମୁଖ୍ୟ ସ୍ରୋତରୁ ଏ ରହନ୍ତି ବାହାର । ୭୧ ।



# ନାରୀ ନିର୍ଯ୍ୟାତନ

ସୁଖରେ ନାରୀ ଜନ୍ମ ହୋଇ,
ଧର୍ମ ଅଧର୍ମ ନ ଜାଣଇ ।୧।
ଏ ପଦ ଭାଗବତରେ ଅଛି,
କିଏ ବା ଏହା ନ ଜାଣିଛି ।୨।
ପଶୁର ନ ଥାଏ ବିଚାର,
ନାରୀ କି ଅଟେ ସମ ତାର । ୩।
ନାରୀ ଜାତିର ମାନହାନି,
ଅବଶ୍ୟ ହୁଏ ଏହା ଘେନି ।୪।
ଭୁଲ୍ ବା କିଏ ନ କରଇ,
ନାରୀ ଭୁଲ୍‌କୁ କ୍ଷମା ନାହିଁ ।୫।
କଥା କଥାକେ ହେୟ କରି,
ଭାଗବତର ପଦ ଧରି ।୬।
ଜାଣିନି ବୋଲି ଧର୍ମାଧର୍ମ,
କହି ଦହନ୍ତି ନାରୀ ମର୍ମ ।୭।
ନାରୀର ମାନ ବୃଦ୍ଧି ପାଇଁ,
କେତେ ଯେ ଯୋଜନା ହୁଅଇ ।୮।
ଆଇନ କେତେ ଗଢା ହୁଏ,
ନାରୀକୁ ସୁରକ୍ଷା ଯୋଗାଏ ।୯।
ନାରୀ ମଙ୍ଗଳ ଅନୁଷ୍ଠାନ,
ଉନ୍ନତ କରେ ନାରୀ ମାନ ।୧୦।

ସଭା ସମିତି ମାନଙ୍କରେ,
ଭାଷଣ, ଲିଖନ ଆଦିରେ ।୧୧।
ନାରୀ ମର୍ଯ୍ୟାଦା ହୁଏ ଗାନ,
ଭାଗବତରେ ନାହିଁ ଧ୍ୟାନ ।୧୨।
ଭାଗବତ ପଦ ପ୍ରଭାବ,
ନ୍ୟୁନ ବୋଲି କିମ୍ପା ଭାବ ? ।୧୩।
ଯାବନ୍ତ ଏ ପଦଟି ଥିବ,
ଲୋକ ମନକୁ ବାନ୍ଧିଥିବ ।୧୪।
ଯେତେ ଭାଷଣ ତୁମେ ଦେବ,
ଭାଗବତକୁ କି ଟପିବ ? ।୧୫।
ଯେତେ ଶିକ୍ଷିତା ହେଉ ନାରୀ,
ଏ ଲେଖା ଦୁର୍ଭାବରେ ପଢ଼ି ।୧୬।
ଅବଶ୍ୟ ବୋଲି ସକଳ
ଉଠାଉ ଥିବେ କାଳ କାଳ ।୧୭।
ହୀନ ମନ୍ୟତା ଭାବ ତାର,
କହ କପରି ହେବ ଦୂର ? ।୧୮।
ନାରୀ ଉନ୍ନତି ଯେବେ ଇଚ୍ଛ,
ଏ ଲେଖା ଭାଗବତୁ ପୋଛ ।୧୯।
ପତ୍ର ପତ୍ରିକା ମାନଙ୍କରେ,
ମାନ ହାନିର ଲେଖା ହେଲେ ।୨୦।
ଦଣ୍ଡ ଦେବାର ବିଧାନକୁ,
କିମ୍ପାଇଁ ନ ଆଣ ମନକୁ ? ।୨୧।
ଧର୍ମ ଶାସ୍ତ୍ରର ଲେଖା ବୋଲି,
ଆଇନକୁ କି ଯିବ ବଳି ? ।୨୨।
ଅଛିକ ପ୍ରାମାଣିକ ଭିତ୍ତି,
ଯା ପାଇଁ ହୀନ ନାରୀ ଜାତି ? ।୨୩।
ଶାନ୍ତି ପାଳନେ କେହି କ୍ଷମ,
ନ ହେଲେ ବୋଲାଏ ଅଧମ ।୨୪।

ନାରୀ ହେବାରୁ ହେବ ହୀନ,
ଏ କେଉଁ ନିୟମେ ଗଣନ ? ।୨୫।
ଯେଉଁ ପ୍ରକାର ସୃଷ୍ଟି ପାଇଁ,
ନାରୀକୁ ଅବଶ୍ୟ କହି ।୨୬।
ପୁରୁଷ କ ତାହା ନ କରେ,
ନାରୀକୁ ଏକା ଦୋଷ ଧରେ ।୨୭।
ନାହିଁ ପ୍ରମାଣ, ନୁହେଁ ନ୍ୟାୟ,
ହୀନ କରିବା ଅଭିପ୍ରାୟ ।୨୮।
ଏଣୁ ଏ ପଦ ଉଠିଯାଉ,
ଏ ଦିଗେ କାର୍ଯ୍ୟାରମ୍ଭ ହେଉ ।୨୯।



# ନିଷ୍ଠୁରତା

( ମନୁଷ୍ୟର ମନରୂପ ଜିନିଷଟି ନ ଥିଲେ ସେ ଅନୁଭବଶୂନ୍ୟ ହୋଇ ସବୁ ସୁଖଦୁଃଖରେ ଊର୍ଦ୍ଧ୍ୱରେ ରହନ୍ତା । )

( ୧ )

ଶୁଣ ବାରେ ଭଗବାନ,
ଦୟାକର ଅକିଞ୍ଚନ ।
ମୋଠୁ ନେଇ ଯା ମୋ 'ମନ'
ହୋଇଯାଏ ମୁଁ ନିଷ୍ଠୁର ।
ଅନୁଭବ ହେଉ ଶୂନ୍ୟ,
ପାଲଟି ଯାଏ ପାଷାଣ ।

( ୨ )

ନ ରହିଲେ ବୋଧଶକ୍ତି,
କିଛି ନ ପାରିବ ଚେତି ।
ଜୀବନ ଜଂଜାଳମାନ,
ରହିବ ମୁହିଁ ଅଜାଣ
ନ କରିବ ନିବେଦନ,
ଦୁଃଖ ନାଶ ଭଗବାନ ।

( ୩ )

ନିଃସ୍ୱ ତ ମୁଁ ହୋଇଥାଇ
'ମନ' ଥିବ କାହିଁ ପାଇଁ ?
କେଉଁ ଅନୁଭବ ପାଇଁ ?
ଦୁଃଖଛଡ଼ା ଅନ୍ୟ ନାହିଁ ।

( ୪ )

ଦୁଃଖ ସୁଖ ମୂଳ 'ମନ',
'ମନ' ନାହିଁ ସବୁ ଶୂନ ।
ମନହୀନ ପ୍ରାଣୀ ହୋଇ,
ବଞ୍ଚିକ ପାରିବ ନାହିଁ ?
ବୃକ୍ଷର କି 'ମନ' ଅଛି,
ରସ ଟାଣି ବଞ୍ଚି ଅଛି ।

( ୫ )

ବୃକ୍ଷସମ ମନ ହୀନ,
କର ମୋତେ ଭଗବାନ ।
ଭାବ ଅଭାବ ସମସ୍ୟା,
ଲୋଡ଼ା ନ ହେଉ ମୀମାଂସା ।
ଯାଉ ମୋ ଦେହେ ମିଳାଇ,
ନ ପଶୁ କା କର୍ଣ୍ଣେ ଦେଇ ।

( ୬ )

ବୃକ୍ଷ ପରି ଠାଇ ପିଇ,
ବଞ୍ଚିଥିବି ଗୁହିଁ ଗୁହିଁ ।
ଝଡ଼ ଆସୁ ବର୍ଷା ଆସୁ,
ଅବା ବାତ୍ୟା ଦେହ ନାଶୁ ।
ବୃକ୍ଷ ନୁହେଁ ବିଚଳିତ,
କର ମୋତେ ବୃକ୍ଷ ବତ୍ ।

( ୭ )

କଥା ଅକଥା ଭଲମନ୍ଦ,
ମୋ ପାଇଁ ନ ଥିବ ପ୍ରଭେଦ ।
ମନ ସଂଯମ ପାଇଁ ଯେତେ,
କଷ୍ଟ ରହୁଛି ଶାସ୍ତ୍ର ମତେ ।
ମୋ ପାଇଁ ନୋହିବ ତା ଲୋଡ଼ା,
ଯେଣୁ ମୁଁ ହେବି ମନ ଛଡ଼ା ।
ସବୁ ଦ୍ୱନ୍ଦ୍ୱର ଊର୍ଦ୍ଧ୍ୱେ ରହି,
ବଞ୍ଚିବ ବଞ୍ଚିବାର ପାଇଁ ।

( ୮ )

ଏତେକ ପ୍ରଭୁ ଦୟା କର,
ମନ ସହିତେ ଦୁଃଖ ହର ।



# ଅଚାନକ ବିପତ୍ତି

( ଦୋଷ କରିବାକୁ କେହି ଚାହେଁ ନାହିଁ । ଆଭ୍ୟନ୍ତର ବାହ୍ୟାର ପରିସ୍ଥିତି ଓ ପରିବେଶର ପ୍ରଭାବରେ ଦୋଷ ସଂଘଟିତ ହୁଏ । ତେଣୁ ଦଣ୍ଡଦାନ ପ୍ରକ୍ରିୟାରେ ଦୟା, କ୍ଷମା, ରହିବା ସଙ୍ଗେ ଦୋଷ କରିବାରେ ଯେ ସହାୟତା କରୁଛି ତାକୁ କଠିନ୍ ଦଣ୍ଡ ଦେବା ଉଚିତ୍ । ଏହା ଆଧ୍ୟାତ୍ମିକ ଜଗତକୁ ଯେପରି ପ୍ରଯୁଜ୍ୟ ଲୋକାନ୍ତରକୁ ମଧ୍ୟ ସେହିପରି ପ୍ରଯୁଜ୍ୟ । )

ପ୍ରଭୁ ହେ,
ଏଡ଼େ ଅବିଚାର କିମ୍ପାଇଁ ?

ସୁଖରେ ସୁଖରେ ବଞ୍ଚେ ଯେବେ ପ୍ରାଣୀ
ତୁମକୁ କିମ୍ପା ବାଧଇ ।୧।

ଅଚାନକ କାହିଁ ବ୍ୟାଧି ଘୋଟିଯାଏ
ହାହାକାର ପଡ଼ିଯାଇ,
ଅବା ପ୍ରିୟଜନ ହଠାତ୍ ମୃତ୍ୟୁର
ଖବର ଆସି ଜୁଟଇ ।୨।

ବଜ୍ରପାତ ସମ ଦୈବୀ ଦୁର୍ବିପାକ
କେତେ କେତେ ଅଛି ରହି,
ଠିକ୍ ସୁଖବେଳେ ହଠାତ୍ କୁଆଡ଼ୁ
ଅପଲକେ ଜୁଟିଥାଇ ।୩।

ଦୁଃସ୍ୱପ୍ନ ଭାର        ହୁଏ ଦୂରମାର
ପାଏ ନାହିଁ ସହା କାହିଁ,
ତୁମ ଅଜଣାରେ        ହୁଏ କି ଏ ସବୁ
ପ୍ରାଣୀ ଦୁଃଖେ ସୁଖ ପାଇ ।୪।

ଦୋଷ ବିଚାରରେ        ଦଣ୍ଡ ଦେଉଅଛ
ବୋଲି ମନ ବୋଧ ହୁଏ,
ସବୁର କରତା        ତୁମେ ଭଗବାନ
ଦୋଷର କି ଅନ୍ୟ କଏ ? ।୫।

ଦୋଷ ସର୍ଜନାରେ        ନିଶ୍ଚୟ ରହିଛି
ତୁମର ହସ୍ତ ନିହିତ,
ଆମକୁ କେବଳ        ଦୋଷୀ ବିଚାରିବା
ନୁହଇଁ କେବେ ଉଚିତ ।୬।

ଗଢ଼ିଛ, ପାଳିଛ        ଯାହାକୁ ତା ପାଇଁ
ଦରଦ ତୁମର ନାହିଁ,
ଦଣ୍ଡ ଦେଲାବେଳେ        ବାପ ମନୋଭାବ
ତୁମକୁ କି ଛାଡ଼ିଯାଇ ? ।୭।

ଦଣ୍ଡ ଦେବାଠାରୁ        କ୍ଷମା ଆଚରିବା
ଅଟଇ ମହତତର,
କହିଛ ଆମକୁ        ତୁମପାଇଁ କଣ
ରହିଛି ଅନ୍ୟ ବିଚାର ? ।୮।

ଦୋଷ ପାଇଁ ଦଣ୍ଡ        ବିଧାନ କରିବା
ସଙ୍ଗେ ଲାଳନ ପାଳନ,
ଶାସନ, ବିଚାର        ଉଭୟ କରମ
କରୁଅଛ ଭଗବାନ ।୯।

ଖାଲି ଦଣ୍ଡ ଦେଇ        ସନ୍ତୁଷ୍ଟ ରହୁଛ
ଭାବୁଛ କି କେବେ ଥରେ,
କାହିଁକି ବିଚାରି        କୁକର୍ମରେ ମନ
ଢାଳିଦେଲି ଏକାନ୍ତରେ ? ।୧୦।

ଖାଇବା ଦରବ    ଦେଇନା ଯାହାକୁ
ପେଟ ଶୁକଲରେ ସିଏ,
ଅନ୍ୟର ଦରବ    ଚୋରି କଲା ଯଦି
ଦୋଷୀ କିମ୍ପା ହେବ ସିଏ ? । ୧୧ ।

ଜନମ କରିଛ    ଖାଇବାକୁ ନାହିଁ
ମାଗିଲେ ବଧିର ହୁଅ,
ଚୋରି କରି ପେଟ    ଭରିଲା ଯଦି ସେ
ଅବଲମ୍ବେ ଦଣ୍ଡ ଦିଅ । ୧୨ ।

ବଳକା କରି ଯେ    ଖାଦ୍ୟ ସାଇତିଛ
ସେ କିମ୍ପା ନୋହିବ ଦୋଷୀ ?
ଭାଇକୁ ନ ଦେଇ    ଏକାକୀ ଖାଉଛ
ତୁମେ କି ଏଥିରେ ଖୁସି ? । ୧୩ ।

ଦୋଷ ଯଦି ଆମେ    କଲୁ ତୁମେ ତହିଁ
ନୁହଇଁ କି ଭାଗୀଦାର,
ଆମକୁ ନିବୃତ୍ତ    କରିବା ପାଇଁକି
ହୋଇଛ କି ହୁସିଆର ? । ୧୪ ।

ଦୋଷ କଲା ବେଳେ    ଆଖି, କାନ ବୁଜି
କେଉଁଠାରେ ରହିଥାଅ,
ତାଡନ, ବାରଣ    ଅଜଣା ଆମକୁ
ଦୋଷ କଲେ ଦଣ୍ଡ ଦିଅ । ୧୫ ।

ଭୁଲ କର ନାହିଁ    କହିଦେଲେ ଖାଲି
ହୁଅଇ କି ତା ପାଳିତ,
ପାଳନ ପାଇଁ କି    ପରିବେଶ ସୃଷ୍ଟି
କରିବା ନୁହେଁ ଉଚିତ୍ ? । ୧୬ ।

ପରିବେଶ ଯାହା    ଗଢିଅଛ ତୁମ୍ଭେ
ଦୋଷ ପାଇଁ ଅନୁକୂଳ,
ଠକାମି, ଭଣ୍ଡାମି    ଚୋରି ଚପଟାଦି
ଅଟଇ ତାର ଆଧାର । ୧୭ ।

ଧନ ଦରବରେ — ଘାସୁଛି କଏ ସେ
କଏ ଭୋକେ ଛଟପଟ,
ଓଷଦ ନ ପାଇ — ରୋଗ ଯନ୍ତ୍ରଣାରେ
କଏ ହୁଅଇ ଅନ୍ତସ୍ଥ ।୧୮।
ଶୀତ ଖରା ସହ — ମୁକ୍ତାକାଶ ତଳେ
ଦୁଃଖେ କାଟେ କଏ ଦିନ,
ଇନ୍ଦ୍ରପୁରୀ ସମ — ପ୍ରାସାଦ ଭିତରେ
ବିଳାସରେ କଏ ମଗ୍ନ, ।୧୯।
ଦେବତା ପରାଏ — ପୂଜିତ କଏ ଯେ
କଏ ପଶୁଠାରୁ ହୀନ,
ବାବୁଙ୍କ କୁକୁର — ଯାହା ଖାଏ ତାହା
କାହା ଭାଗ୍ୟେ ହୁଏ ସ୍ୱପ୍ନ ।୨୦।
ଏପରି ବିଷମ — ଉତ୍‌ବେଶ ସୃଜି
ଆମକୁ ଦେଉଛ ଦଣ୍ଡ,
ଏଥିରେ କପରି — ସତ୍ୟ, ନ୍ୟାୟ ପାଳି
ରହିବ ଧରଣୀ ପିଣ୍ଡ ? ।୨୧।
ବିଷମତା ଦୂର — କରିବାରେ ତୁମ
ନାହିଁ ଯଦି ପ୍ରଭୁ ଶକ୍ତି,
ଦଣ୍ଡଦାନ ନୀତି — ବଦଳାଇ ଦିଅ
ଏ ସବୁ କାଥକୁ ଶନ୍ତ ।୨୨।
ତୁମେ ଯେଣୁ ମୂଳ — କରତା ଦୋଷର
ଦୋଷୀ ପ୍ରତି ରହୁ ଦୟା,
ନ୍ୟାୟ ସଙ୍ଗେ ଦୟା — ମିଶିଲେ ବସ୍ତୁର
ହୋଇଥାଏ ମହମାୟା ।୨୩।
ଅବସ୍ଥା ବସ୍ତୁର — କ୍ଷମା ପ୍ରଦାନଲେ
ଦୋଷୀ ମନ ବଦଳିବ,
ଦଣ୍ଡ ପର ମଧ — କ୍ଷମାର ରହିଛି
ଦୋଷ ନିରୋଧ ପ୍ରଭାବ ।୨୪।

ଚୋରକୁ ପ୍ରଲୁବ୍ଧ କଲା ଯା'ର ମାଲ
ପରୋକ୍ଷେ ଦେଲା ସହାୟ,
ତାକୁ ଦଣ୍ଡ ଦେଲେ ଅନ୍ୟାୟ ସାଇତା
ପ୍ରବୃତ୍ତି ହୋଇବ କ୍ଷୟ । ୨୫ ।
ଚୋର ନୁହେଁ, ଚୋର ହୋଇଛି ଯାହାର
ଦଣ୍ଡଟି ତା ପାଇଁ ହେଉ,
ସାଇତା କମିଲେ ଚୋର କମିଯିବ
ଦୋଷ-ଦଣ୍ଡ କମା ଆଉ ? । ୨୬ ।
ଅଗ୍ରଜଙ୍କ ଦଣ୍ଡ ବିଧାନ ହଟିଲେ
ହୋଇବୁ ଆମେ ଆଶ୍ୱସ୍ତ,
ଏତିକ ମାଗୁଣି ତୁମ ପଦେ ପ୍ରଭୁ
ଘେନ ଦୟାବନ୍ଧୁ ହେଉ । ୨୭ ।

# ଉଦ୍ଧୃତ

( ନିଜ ଜୀବନର ମୁଖ୍ୟଧାରା ଉପରେ ଲେଖକଙ୍କ ଦ୍ୱାରା ରଚିତ 'ଆତ୍ମଚିନ୍ତନ' (ଅପ୍ରକାଶିତ) କଥାତାର କେତୋଟି ଅଂଶ) ଏଥିରେ ରହିଛି- ଜନ୍ମ ନିୟନ୍ତ୍ରଣ, ଦ୍ୱିଅ ବିବାହ, ମହତ ପରୀକ୍ଷା, ରୋଗ ବିଷୟରେ ଲେଖକଙ୍କର ନିଜସ୍ୱ ବିଚାରଧାରା )

× × × ×

ସଂସାର ଜଞ୍ଜାଳ ଭୁଲାଇବା ପାଇଁ
ସମ୍ପତ୍ତି ହେଲା ମୂଳ,
ସମ୍ପତ୍ତି ନ ଥିଲେ ସଂସାରୀ ଜୀବନ
ହୁଏ ଯିନା କଲବଲ ।

ହେଲେ ଏ ସଙ୍କଟ ବିବାହ କଲିନି
ନ ଥିଲା ମୋର ପ୍ରୟାସ,
ମାତ୍ର ପ୍ରାରବ୍ଧର କବଳୁ କି କେହି
ଲଭିଛି ହେଲେ ଖଲାସ ?

ପ୍ରାରବ୍ଧ ପ୍ରଭାବେ ସଂସାର ଜଞ୍ଜାଳେ
ହୋଇଗଲି ମୁହିଁ ଛନ୍ଦ,
ବିତିଲା ଜୀବନ ଦୁଃଖ ଅଭାବରେ
ହୋଇ ସଦା ଧନ୍ଦ ବାନ୍ଧ ।

କୁଟୁମ୍ବ ସୀମିତ କରିବାର ପାଇଁ
ଥିଲେ ଏ ଯୁଗେ ଯୋଜନା,
ମୁଁ କିମ୍ପା ତାହାର ସୁଯୋଗ ନ ନେଲି
ବୋଲି ହୁଏ ଆଲୋଚନା ।

କରି ଯାଗ ଯଜ୍ଞ  ପୂଜି ଦେବଦେବୀ
ନ ପାଇ ସନ୍ତାନଟିଏ,
ବିକଳ ହୁଅନ୍ତି  କେତେ ଯେ ଦମ୍ପତି
ହିସାବ କେ ତାର ନିଏ ?
ନ ଇଚ୍ଛି ସନ୍ତାନ  ଲଭନ୍ତି ଅନେକ
ପୋଷଣେ ନାହିଁ ଶକତି,
ଆମରି ଇଚ୍ଛାରେ  ଚଳେ କି ଜଗତ
ଚଳେ କି ଆମ ନିୟତି ?
କୁଟୁମ୍ବ ଯୋଜନା  କରିଅଛୁ ଯିଏ
ନ କରିଥିଲେ ସେ ତାହା,
ସନ୍ତାନ ଜନମ  ନ ହେବାର ତାର
ବିଶ୍ବରେ ମୋ ମନ ଏହା ।
ଯାହାକୁ ଯାହାଟି  ମିଳିବାର ଅଛି
ସ୍ବପ୍ରାରବ୍ଧ ଅନୁଯାୟୀ,
ମନୁଷ୍ୟ ଶକ୍ତି ତା  ଏଡ଼ାଇ ନ ପାରେ
ବିଶ୍ବାସ ମୋ ଏଥିରେ ହିଁ ।

× × × ×

ଝିଅ ବାପ ହୋଇ  ନିସମ୍ପତ୍ତି ହେବା
ଘୋର ପାପ ମୋ ବିଶ୍ବରେ,
ଉଦ୍ଧାର ତହିଁରୁ  ମିଳିବ କେବଳ
ଝିଅ ବିଭା ନ କରିଲେ ।
ଝିଅ ଅଭିଆଡ଼ା  ରଖିବା ଉତ୍ତମ
ନୁହେଁ ସମାଜ ମତରେ,
ଅଡୁଆ ଭୁଟିବ  ଇଚ୍ଛାବର ବିଧି
ଯଦି ପ୍ରଚଳିତ ହେଲେ ।

ବିବାହ ବ୍ୟାପାରେ ପିତା ମାତାଙ୍କର
ପ୍ରବେଶ ବଡ଼ ମୂଳ,
ଦିଆ ଅଦିଆର ଚଉଲ ଚାଉଲ
ବିସ୍ତାଏ ଅଜ୍ଞାନ ଜାଲ ।
ଧର୍ମ ଘରେ ବସି କରିଣ କଏ ସେ
ଗର୍ବେ ଜଣ ମୋଡ଼ ଗୃଲେ,
ସମଯୋଗ୍ୟ ହୋଇ ନିର୍ଦ୍ଧନେ ପଡ଼ କେ
ଅନୁତାପାନଳେ ଜଳେ ।
ବିବାହ ବ୍ୟାପାରେ ପୂର୍ଣ୍ଣ ସ୍ୱାଧୀନତା
ପୁଅ ଝିଅ ଲଭ କଲେ,
ପିତା ମାତା ଅବା ବାହାର ଲୋକର
ପ୍ରରୋଚନା ନ ରହିଲେ ।
ଦିଆ ଅଦିଆର ପ୍ରଶ୍ନ ନ ରହିବ
ଯାହା ମନ ଯାଙ୍କୁ ପାଏ,
ମନ କାରବାରେ ଧନ ସମ୍ପତ୍ତିର
ବିଚାର କି ଆଉ ରହେ ?
ନସମ୍ପତ୍ତି ହୋଇ ଝିଅ ବିଭାକଲା
ପ୍ରଚଳିତ ନୀତି ମାନ,
ଜାଣି କି ଥିଲି ମୁଁ ନିର୍ଦ୍ଧନ ଶ୍ୱଶୁର
ହୁଏ ବଡ଼ ଧନମାନ ।
ଜାଣିଥିଲେ କି ମୁଁ ଏଡ଼ାଇ ପାରନ୍ତି
ନିଯୁକ୍ତ ଅନୁଶାସନ,
ଯାହା ପାଇଁ ଯାହା ଖଞ୍ଜା ଅଛି ତାହା
ଅବଶ୍ୟ ହୁଏ ଫଳନ ।

× × × ×

'ଗୀତା ସୁଧାସାର' ବହିଟି ଛପାଇ
ବାନ୍ଧିଥିଲି ଆଶା ମନେ,
ସନ୍ତାନ-ମାନେ ମୋ ଉତ୍ସାହିତ ହେବେ
ଆନନ୍ଦେ 'ଗୀତା' ପଢନେ ।

'ଗୀତା' ପାଠ କଥା          ଦୂରେ ଥାଉ 'ଗୀତା-
ସୁଧାସାର' ନ ପଢ଼ିଲେ,
ହୀନଜନ ଲେଖା          ହୀନ ବୋଲି ପରା
ମନେ ମନେ ଭାବ ନେଲେ ।

ହୀନ ହୋଇ ମୁହିଁ          ମେ ମହାଭାବର
ପ୍ରସ୍ଥରେ କଲି ସାହସ,
ଅମହତ ଜନ          ମହତ କାମ କି
କଲେ ହୁଏ ତାର ଦୋଷ ?

ମହତ କଥାର          ମହତ ପଣିଆ
କେବେ କ୍ଷୟ ହୁଏ ନାହିଁ,
ବରଂ ଅମହତ          ବୋଲଏ ମହତ
ତାହାର ସଂସ୍ପର୍ଶ ପାଇ ।

ମାତ୍ର ଆମ ଦେଶେ          ରହିଛି ଚଳଣି
ମହତ ଜନର କଥା,
ଶୁଣିବାରେ ଲୋକେ          ଆଗ୍ରହୀ ହୁଅନ୍ତି
ନ ବିଚାରି ତା ସାରତା ।

ଏହି ଦୃଷ୍ଟିରୁ କି          ସନ୍ତାନେ ମୋହର
ହେୟ କଲେ ମୋର ବହି,
ଯେହେତୁ ଅଜ୍ଞାନୀ          ହିନ୍ଦୁ ବିଦ୍ୟ ବୋଲି
ଦୁର୍ବଳ ମୁଁ ଅଟଇ ।

X X X X X

ସହାସ୍ୟ ହୋଇ ମୁଁ          ସମାସ୍ୟ ସୁଲଭ
କର୍ମ ଯେବେ ନ କରିବ,
ତାହାଙ୍କ ସଂସାରେ          ମନ ମରା ହୋଇ
ଦୁଃଖେ ଦିନ କଟାଇବ ?

କୁଆଡେ଼ ମିଶ ମୁଁ | କପଟ ରନ୍ଧ୍ରବ
ନେ୍ରାଲ ଭାବେ ସଦାବେଳେ,
ରୋଗ ଯନ୍ତ୍ରଣାର | କଥା ମନେ ପଡ଼ି
ମନକୁ ଦୁର୍ବଳ କରେ ।
ପୁଣି ଯାଂବେ ବସି | ରୋଗ ଆଶଙ୍କାରେ
ଆତଙ୍କିତ ହୋଇ ଯେବେ,
ମନ ନେଇ ଥିବା | ପଥ ମୁଁ ତେଜିବ
ଅବିବେକୀ ହୁଁ ବୋଲାବେ ।
ରୋଗ ଯନ୍ତ୍ରଣା ତ | ଦେହର ସ୍ୱଭାବ
ରୋଗକୁ କାହିଁ ଡର,
ରୋଗ ତନ୍ତ୍ର ଜଣା | ଜ୍ଞାନୀ ଲୋକ କେବେ
ରୋଗେ ନ ହୁଏ ଅଧୀର ।
ଯେତେ ପୁଣ୍ୟବନ୍ତ | ହେଲେହେଁ ମାନବ
ଶରୀର ଯନ୍ତ୍ରଣା ଭୋଗେ,
ରୋଗାନ୍ତ ହେଉ ବା | ଆଘାତରୁ ହେଉ
ଶରୀରେ ବିକାର ଜାଗେ ।
ପଞ୍ଚଭୂତେ ଗଢ଼ା | ପ୍ରାଣୀର ଶରୀର
ଷଡ଼ ବିକାର ଅଧୀନ,
ବନ୍ଧନ ଲକ୍ଷଣ | ବନ୍ଧନ ଯନ୍ତ୍ରଣା
ଅଟେ ବିକାରର ଗୁଣ ।
ସମ୍ପୂର୍ଣ୍ଣ ନିଷ୍ପାପ | ସମ୍ପୂର୍ଣ୍ଣ ପାପାସକ୍ତ
ହୋଇ ନପାରେ କେ ପ୍ରାଣୀ,
ଯେପରି ସଂସାର | ସେପରି ଶରୀର
ଲଭିଥାଏ ପ୍ରାଣୀ ପୁଣି ।
ପାପ ପୁଣ୍ୟ ମିଶା | ଗଢ଼ା ଏ ଶରୀର
ଭେଦ କେବଳ ମାତ୍ରାର,
ପାପ ଭାଗ ଯହିଁ | ଅଧିକ ସେଠାରେ
ଅଧିକ ଯନ୍ତ୍ରଣା ସାର ।

ମୁନି ଋଷି ମଧ୍ୟ ଦେହ ଯନ୍ତ୍ରଣାରୁ
ଲଭନ୍ତି ନାହିଁ ନିସ୍ତାର,
ଧୈର୍ଯ୍ୟ ଧରି ସହ୍ୟ କରନ୍ତି ଜ୍ଞାନୀଏ
ଅଜ୍ଞାନୀଏ ହରବର ।
ବିଭୁଙ୍କ ବିଭୂତି ସ୍ୱରୂପ ଔଷଧ
ପ୍ରୟୋଗରେ ଉପଶମ,
ମିଳେ ମାତ୍ର ତାହା ସମ୍ପୂର୍ଣ୍ଣ ନିରୋଧେ
ନ ହୁଅଇଟି ସକ୍ଷମ ।
ଶରୀର ଅଟଇ ରୋଗ ଜନ୍ମ ସ୍ଥାନ
ଏଣୁ ରୋଗଭୂ ବୋଲାଏ,
ଯାବତ ବଳୟ ନ ହୋଇଛୁ ପ୍ରାପ୍ତ
ରୋଗର ଆଶଙ୍କା ଥାଏ ।
ରୋଗ ଦେଇ ରୋଗ ନିବାରଣ ପାଇଁ
ଔଷଧ ଯେ ତିଆରିଲେ,
ମନୁଷ୍ୟ କି କ୍ଷମ ସେ ମାୟା ରହସ୍ୟ
ବୁଝିବାକୁ ଏତେ ହେଳେ ?
ଏଣୁ ରୋଗ ଚିନ୍ତା ପରିହରି ମନୁ
ବିଭୁ କରୁଣାରେ ଆସ୍ଥା,
ରଖି ନିର୍ଭୟରେ ସ୍ୱପଥେ ଗମିବା
ଜ୍ଞାନୀ ମାନଙ୍କର କଥା ।
ବୁଝି ଏହି ମତ ଧୈର୍ଯ୍ୟ ଅବଲମ୍ବି
ଆଶାୟୀ ହୋଇ ରହିଛି,
ଅନ୍ତର୍ଯ୍ୟାମୀ ପ୍ରଭୁ ଅନ୍ତର ବୁଝି ମୋ
ବାଟ ବତାଇବେ ବାଛି ।
ଆସିବ ସୁଯୋଗ ଦିଶିଯିବ ବାଟ
ଛିଣ୍ଡିବ ସଂଶୟ ଡୋର,
ବିଭୁ କରୁଣାର ଅପାର ମହିମା
ବୁଝିବି ମୁଁ କବା ଛାର ।

# ଖଳଲୋକ

( ୧ )

ପୋଷା ଗାଈ ଦିଏ କ୍ଷୀର,
ପୋଷା ଶ୍ୱାନ ଜଗେ ଘର ।
ପୋଷା ଶାରୀ ଶିଖେ ନାମ,
ରଟେ ସଦା ରାମ ରାମ ।
ଶୁଣି ଶୁଣି ସଦା ନାମ,
ବିଭୁ ପଦେ ଢଳେ ମନ ।
କଟାକଟି କରେ ମୂଷା,
ଘରେ ଲଗାଏ ବେଉଷା ।
ପୋଷା ବିଲି ମାରେ ତାକୁ,
ଘରଟି ହୁଅଇ କାବୁ ।

( ୨ )

ଗାଈ, ଶ୍ୱାନ, ବିଲି, ଶାରୀ,
କେଡ଼େ ସତେ ଉପକାରୀ ।
ଏହାପରି କେତେ ପ୍ରାଣୀ,
ମଣିଷର ତୋଷ ମାନି ।
ରହି ପାଖେ ପାଖେ ତାର,
ଲୋଡ଼ି ତା ସ୍ନେହ ଆଦର ।

ଉପକାର କରିଥାନ୍ତି,
ବହୁ ମନରେ ପ୍ରଶାନ୍ତି ।
ଧାରୁଆ ସେ ହୁଏ ନାହିଁ,
ଯାହା ପାଏ ଖୁଣ୍ଟିଥାଇ ।
ସଦା ଅନୁରକ୍ତ ରହି,
ସେବ ଥାଏ ମନ ମୋହି ।

( ୩ )

ହୀନ ଜନ୍ତୁ ପଶୁ ପକ୍ଷୀ,
ଧର୍ମାଧର୍ମ ନାହିଁ ଶିକ୍ଷା ।
ଥାଉ ସିନା ଆମେ କହି,
ଉଚିତ କି ହୋଇଥାଇ ?

( ୪ )

ସର୍ପ ଏକ ବ୍ୟନ୍ତୁଜନ୍ମ,
ଜୀବ ମଧ୍ୟରେ ଅଧମ ।
ପୋଷା ସିଏ ମାନିଥାଇ,
ମିଳି ଦୁଧ ସୁଖେ ରହି ।
ଖଳ ଭାବଟି ନ ଛାଡ଼େ,
ବେଳ ଦେଖି ଚୋଟ ମାରେ

( ୫ )

ପଶୁ ପକ୍ଷୀ ଯେତ ଏହା,
ମଣିଷର କି ଭିନ୍ନେ ରହା ?

( ୬ )

ସବୁ ମଣିଷ କି ଚାଣ୍ଡ,
ଖାଇ ପିଇ ଦୁଧ ଦେଇ ?

ସବୁ ମଣିଷ କି ଶ୍ୱାନ,
ମୁନିବ ହିତେ ସଦା ଧ୍ୟାନ ?
ସବୁ ମଣିଷ କି ଶାସ୍ତ୍ର,
ନାମ କହେ ବ୍ରତ କରି ?
ସବୁ ମଣିଷ କି ବଳ,
ଶତ୍ରୁ ନାଶେ ମନ ଖାଲି ?

( ୭ )

ଅଛନ୍ତି ତା ମଧ୍ୟରେ ସର୍ପ,
ମୋତେ ଦେଖାଇଣ ଦର୍ପ ।
ବେଳ ଦେଖି କାଟେ ତଣ୍ଡି,
ହୁଏ ନା ସତର୍କ ଦଣ୍ଡି ।

( ୮ )

ଖଳ ଲୋକ ତାକୁ କହି,
ଥାଏ ମିଟିମାଟି ରହି ।
ଚେଷ୍ଟା ଫନ୍ଦି କର୍ମବଳେ,
ଭୁଲ ନାହିଁ କେତେବେଳେ ।

( ୯ )

ଅଣ୍ଟି ଛୁରି ତଣ୍ଟି କାଟେ,
ବିଶ୍ୱାସରେ ବିଷ ଗୁଟେ ।
ବୋଲି ଲୋକେ କହୁଥାନ୍ତି,
ଖଳ ଲୋକ କର୍ମ ଶାନ୍ତି ।

( ୧୦ )

ସର୍ପୁଁ ବେଶୀ ଭୟଙ୍କର,
ଅଟନ୍ତି ଏ ଖଳ ନର ।

ମନ୍ତ୍ରେ ସର୍ପ ହୁଏ ବଶ,
ଖଳପାଇଁ ନାହିଁ ଫାଶ ।
ମାନ, ଧର୍ମ, ହିତବାଣୀ,
ସବୁ ଫାଟିଯାଏ ଫାଣି ।

( ୧୧ )

ସଦା ହସିଆର ହୁଅ,
ଖଳଠାରୁ ଦୂରେ ରହ ।



# ସତଧ

**କଏ ଆଗ ?**

ଦୋଷ ଆଗ ନାଁ ଦଣ୍ଡ ଆଗ ?
କଏ ବତାଇବ ବାଗ ?
ଦଣ୍ଡ ଦେବାପାଇଁ    ମନ ଯେବେ ହେଲା
ଦୋଷ କ'ଣ ମହରଗ ?  । ୧ ।

ନରହତ୍ୟା ଦୋଷ    ଲଗିଲା ଭୃତ୍ୟେଙ୍କୁ
ସାକ୍ଷ୍ୟ ପ୍ରମାଣରେ କଟ୍ଟି,
କଷ୍ଟ ତ ନୋହିଲା    ବଗ୍ଣର ଫତଏ
ମୃତ୍ୟୁ ଦଣ୍ଡ ଦେଲେ ବାଣ୍ଟି  । ୨ ।

କ୍ଷମା ଦେବା ପାଇଁ    ରାଷ୍ଟ୍ର ନାୟକଙ୍କ
ମିନତି ନୋହିଲା ଯେନା,
ଦୋଷ ଆଗ କମ୍ବା    ଦଣ୍ଡ ଆଗ କଥା
ଏଥିରୁ ହେଉ ଧାରଣା  । ୩ ।

ଯେଉଁ କଥା ପାଇଁ    ମନରେ ବିବାଗ
ଇଚ୍ଛା ଦଣ୍ଡ ଦେବାପାଇଁ,
ସେ କଥାରେ ଦଣ୍ଡ    ନୁହଇଁ ସମ୍ଭବ
ଯେଣୁ ଭୁଲ ତା ଅଟଇ  । ୪ ।

ମନଗଢା ଦୋଷେ    ଅଭିଯୋଗ ଆସେ
ଦଣ୍ଡର ବିଧାନ ହୁଏ,
ଅସଲ କଥାଟି    ଲୁକ୍‌କାୟିତ ହୁଏ
ଜାଣିବ କାହିଁକି କଏ  । ୫ ।

ଏପରି ଘଟଣା　　　କେତେ କେତେ ଘଟେ
　　ଦଣ୍ଡିଛି ଯେଉଁଠି ଆଗ,
ମିଥ୍ୟା ଦୋଷାରୋପ　　　ମିଥ୍ୟା ସାକ୍ଷ୍ୟ ବଳେ
　　ହୋଇଥାଏ ତାହା ଭୋଗ ।୬।

ଆମ ବଗୃରରେ　　　ମିଥ୍ୟା ଜାଲ ପାତି
　　ସତ୍ୟକୁ ପକାଉ ଢାଙ୍କି,
ଭୁଲିଯାଉ ଆମେ　　　ସତ୍ୟ କରାମତି
　　ଆପେ ସେ ମାରଇ ଉଙ୍କି ।୭।

କାହାର ଯତନ　　　ଲୋଡ଼େ ନାହିଁ ସିଏ
　　କାଟିବାକୁ ମିଥ୍ୟା ଫାଶ,
ଯଥାକାଳେ ଆପେ　　　ହୁଏ ପ୍ରକାଶିତ
　　ଯେଣୁ ସେ ସ୍ୱୟଂ ପ୍ରକାଶ ।୮।

କିଛୁକାଳ ପାଇଁ　　　ଲୁଚି ରହିଯିବା
　　ଅଟଇ ତାହାର ଖେଳ,
ଅଜ୍ଞାନୀ ମାନଙ୍କ　　　ଧ୍ୱଂସ ପାଇଁ ଏହା
　　ଅଟେ ତାହାର କୌଶଳ ।୯।

ମିଥ୍ୟା କାରବାର　　　ଆପାତ ମଧୁର
　　ବୁଝେ ନା ଅଜ୍ଞାନୀ ମନ,
ଥୋପ ତଳେ ଥାଏ　　　ସତ୍ୟରୂପୀ କଣ୍ଟା
　　କବଳେ ହୁଅଇ ଲୀନ ।୧୦।

ଜାଣିଛନ୍ତି କେହି　　　ମିଥ୍ୟାଶ୍ରୟେ ରହି
　　ଲଭନ୍ତି ଅସରା ଦୁଃଖ,
ସୁଖନାମେ ତାହା　　　ଧ୍ୱଂସର ପ୍ରସୂତି
　　ହୋଇଥାଏ ମନେ ଲେଖ ।୧୧।

